# ସ୍ମୃତି ତରଙ୍ଗ

—ଲେଖକ—

**ଶ୍ରୀ ଅଚ୍ୟୁତାନନ୍ଦ ଦାସ**, ଏଡ଼ଭୋକେଟ
ମଲ୍ଲିକାଶପୁର

—ମୁଦ୍ରଣ—

**ଶ୍ରମିକ ସମବାୟ ପ୍ରେସ**
ବାଲେଶ୍ୱର

—ପ୍ରକାଶକ—

**ଶ୍ରୀ ଅଚ୍ୟୁତାନନ୍ଦ ଦାସ**

—ପ୍ରଥମ ପ୍ରକାଶ—

୧୯୮୭

—ମୂଲ୍ୟ—

୧୦ ଟଙ୍କା

# ।। ଅବତରଣିକା ।।

ସ୍ୱପ୍ନ ଯେତେବେଳେ ସତ ହୁଏ, ସେତେବେଳେ ମନରେ ଯେ କେତେ ଆନନ୍ଦ ଆସେ ତାହା କେବଳ ଅନୁଭବୀ ଜାଣେ। ଲେଖକ ହେବାର ବାସନା ମୋ ମନରେ କେବେ ନଥିଲା। ମାତ୍ର ଅବସର ସମୟକୁ ସରସ କରିବା ପାଇଁ ବେଳେ ବେଳେ ମନ ଧାଇଁଯାଏ ଲେଖନୀ ନିକଟକୁ। ସ୍ମୃତିର ଯେତେସବୁ ତରଂଗ ଉଠେ ତାକୁ କଲମ ମୁନରେ ବାନ୍ଧି ଦେବାକୁ ପଡେ। ମୋର ଏହି ଚେଷ୍ଟା ଅତି ସାଧାରଣ ହେଲେ ବି ଏହାରି ଭିତରେ ମୋ ଦେଶ, ଜାତି ଓ ଭାଷାର ଅନେକ କଥା ଲୁଚି ରହିଛି। ଆମ-ମାନଙ୍କ ଜୀବନରେ ସନ୍ଧ୍ୟା ଆଗତ ପ୍ରାୟ। ବହୁ ଅଶ୍ରୁ-ସଜଳ କାହାଣୀ ଓ ହାସ୍ୟ ମୁଖର ଦିନ ଭିତର ଦେଇ ଆସିଲାବେଳେ ଯେଉଁ ଅଭିଜ୍ଞତା ସବୁ ଜାତହୁଏ ତାକୁ ଅନ୍ୟ ନିକଟରେ ବଖାଣି ବସିଲେ ମନର ଦୁଃଖ ମେଣ୍ଟିଯାଏ କିମ୍ବା ବେଳେ ବେଳେ କର୍ତ୍ତବ୍ୟ ସରିଗଲା ବୋଲି ମନରେ ଗୋଟିଏ ପ୍ରକାର ଧାରଣା ସୃଷ୍ଟି ହୁଏ।

ମୁଁ ନିଜେ ଜାଣେନା କାହିଁକି ଏଭଳି ଏକ ଇତିହାସ ଉପରେ ତର୍ଜମା କରିବା ପାଇଁ ଆଗ୍ରହ ସୃଷ୍ଟି ହେଲା। ଆଜି ନବୀନ ମାନଙ୍କ ନିକଟରେ କିଛି ଆଦର୍ଶ ରହୁନାହିଁ। ସେମାନେ ଉତ୍ତର ପୁରୁଷ ପାଇଁ ସମ୍ଭାବନା କି ନୁହେଁ ତାହା ଜାଣି ପାରୁନାହାନ୍ତି। ସେମାନଙ୍କୁ ସଚେତନ କରିବା ପାଇଁ ପ୍ରବୀଣ ବ୍ୟକ୍ତିର ଅନେକ କର୍ତ୍ତବ୍ୟ ରହିଛି। ମାତ୍ର ସେଭଳି କର୍ତ୍ତବ୍ୟ ମୋ ଭଳି ଅନେକ ପ୍ରବୀଣ ବ୍ୟକ୍ତି ନିଷ୍ଠାର ସହିତ ପାଳନ କରିବା ପାଇଁ ଇଚ୍ଛା ପ୍ରକାଶ କରନ୍ତି ନାହିଁ। କୌଣସି ମତେ ସମୟ କାଟିଦେଲେ ସେମାନଙ୍କୁ ଛୁଟି ମିଳେ ବୋଲି ସେମାନେ ବିଚାର କରନ୍ତି। କିନ୍ତୁ ଏଭଳି ଧାରଣା ଆଦୌ ଠିକ୍ ନୁହେଁ। ପ୍ରବୀଣ ବ୍ୟକ୍ତିର ନବୀନ ପାଇଁ ଅନେକ ଦାୟିତ୍ୱ ରହିଛି, ଏହି ଦାୟିତ୍ୱକୁ ଏଡ଼େଇବା ସୁନ୍ଦର କଥା ନୁହେଁ। ମୁଁ ସବୁବେଳେ ବିଚାର କରେ ଯେ ମୋର ଉତ୍ତରାଧିକାରୀ ମୋ ଅପେକ୍ଷା ଜିଜ୍ଞାସୁ ହେବେ। ହେଲେ ତାଙ୍କ ଆଗରେ ଇତିହାସ ଥୋଇବାକୁ ପଡ଼ିବ। ମୁଁ ଯେଉଁ ଅଞ୍ଚଳରେ ଜନ୍ମ ଗ୍ରହଣ କରିଛି ଓଡ଼ିଶା ଇତିହାସ ତଥା ଓଡ଼ିଆ ସାହିତ୍ୟର ଇତିହାସରେ ତାହାର ଗୁରୁତ୍ୱ ସର୍ବାଧିକ। ଏହି କ୍ଷେତ୍ର ଜାତୀୟ ଜନ ଜାଗରଣର ପ୍ରସୂତି ଭୂମି। ଏହି ମାଟି ରାଧାନାଥଙ୍କ ଭଳି କବି ଓ ଫକୀର ମୋହନଙ୍କ ଭଳି କଥା ଶିଳ୍ପୀଙ୍କୁ ଜନ୍ମ ଦେଇଛି। ଏଇଠି ରାଜା ବୈକୁଣ୍ଠନାଥ ଦେଙ୍କ ଭଳି ମତିମାନ ପୃଷ୍ଠପୋଷକ ଜନ୍ମ ଗ୍ରହଣ କରିଥିଲେ। ସାହିତ୍ୟର ତ୍ରିବେଣୀ ତୀର୍ଥ ନାମରେ ବାଲେଶ୍ୱର ମାଟି ସର୍ବଦା ପ୍ରସିଦ୍ଧି ଅର୍ଜନ କରିଛି। ଆଜି କିନ୍ତୁ ସେହି ମାଟିର ସନ୍ତାନ ତା ଇତିହାସକୁ ଅନୁଧ୍ୟାନ କରୁନାହିଁ। କିଛି ବର୍ଷ ତଳେ ଏହିଭଳି ଏକ ପ୍ରେରଣାରେ ବଶବର୍ତ୍ତୀ ହୋଇ ମୁଁ 'ଶୃଙ୍ଖଳିଆ ବର' ପୁସ୍ତକ ରଚନା କରିଥିଲି। ତାହା ପାଠକ ମହଲରେ ବିଶେଷ

ଆହୃତ ହୋଇ ପାରିଛୁ ବୋଲି ମୁଁ ଅନୁଭବ କରୁଛୁ । ତେଣୁ ମୋର ଏହି ପ୍ରଚେଷ୍ଟା ହେଉଛି ଅତୀତର 'ଗୁଉଲିଆ ଦିନ' ସହିତ "ମୃତ ମନ୍ଥନ"ର ସଂଯୋଗ ସ୍ଥାପନ କରିବା ।

ପୂର୍ବରୁ କହିଛି ବାଲେଶ୍ୱରର ଐତିହ୍ୟ ଅତୁଳନୀୟ । ଯେଉଁମାନେ ଯେହି ଐତିହ୍ୟ ସହିତ କିଛି ମାତ୍ରାରେ ଜଡ଼ିତ ଏକଥା ଶୁଣିଲା ମାତ୍ରେ ସେମାନଙ୍କ ମନରେ ସ୍ୱତଃ ଏକ ଶିହରଣ ଜାତହେବ । ଫକୀର ମୋହନଙ୍କ ଭଳି ଜଣେ କବି ଔପନ୍ୟାସିକ ଓ ପ୍ରଶାସକ ଏଠାରେ ଯାହାକିଛି କରି ଯାଇଛନ୍ତି ତାଙ୍କୁ ପ୍ରତ୍ୟକ୍ଷ କରିଥିବା ଲୋକମାନେ ଏବେ ମଧ୍ୟ ବଞ୍ଚିଛନ୍ତି । ସେମାନଙ୍କ ସହିତ ମୁଁ ମିଶିଛି ଓ ସେ ଇତିହାସ ସହିତ ଯୋଗସୂତ୍ର ରକ୍ଷା କରିଛି । ତେଣୁ ଭାବିଲି ସଂସାର ଛାଡ଼ିବା ପୂର୍ବରୁ ଆମ ବଂଶଧର ମାନଙ୍କ ପାଇଁ କିଛିଟା ମୃତ ସାଇତି ରହୁ ଅନେକ କଥା କହିବାକୁ ଅଛି ମାତ୍ର ସେଥିପାଇଁ ଆମ ନିକଟରେ ଆଉ ସମୟ ନାହିଁ । ତେଣୁ ଏଠାରୁ ବିଦାୟ ଦେବା ପୂର୍ବରୁ କିଛି କହିଯିବାକୁ ମୁ ଉଚିତ ମନେ କଲି । ମନ ଜରିଆରେ ଏକା ବେଳେକେ ଅନେକ ତରଂଗ ଉଠେ । ମୁଁ ଏଠାରେ ସବୁ ତରଂଗକୁ ବାନ୍ଧି ରଖି ପାରିନାହିଁ । ଅଳ୍ପ କେତୋଟି ତରଂଗ ଯାହା ସହିତ ମୋର ନିବିଡ଼ ଅନୁଭୂତି ଯୋଡ଼ି ହୋଇଛି ତାକୁ କେବଳ ମୁଁ ସଞ୍ଚୟ କରିବାକୁ ଚେଷ୍ଟା କରିଛି, ଅନ୍ୟ ଗୁଡ଼ିକ ମୋ ପାଇଁ ଅଦରକାରୀ ନୁହେଁ ସତ୍ୟ ତଥାପି ଉପସ୍ଥିତ କ୍ଷେତ୍ରରେ ସେସବୁକୁ ମୁଁ ଅବତାରଣା କରୁନାହିଁ । ନୂଆ କିଛି କହିବା ପାଇଁ ମୋ ନିକଟରେ ଭାଷା କିମ୍ବା ଭାଷା ନାହିଁ । ଯାହା ପୁରୁଣା ତାକୁ କହିବା ପାଇଁ ମୁଁ ଦୁଃସାହସ ପୋଷଣ କରିଛି । ମୁଁ ଅବଶ୍ୟ ଜାଣେନା ମୋର ଠିକ ଯୁବ ପାଠକଗଣ ମୋ କଥାକୁ କିଭଳି ଭାବରେ ଗ୍ରହଣ କରିବେ । ମଣିଷ ହଜିଯାଏ, ମାତ୍ର ମୃତ କେବେ ହଜି ଯାଇ ପାରେନା । ବାଲେଶ୍ୱର ମାଟିର ଯେଉଁ ନିଜସ୍ୱ ପରଂପରା ରହିଛି ତାକୁ ନେଇ ଆଜି ଓଡ଼ିଶା ଗର୍ବ ପ୍ରକାଶ କରେ, ତାହାର ସ୍ମୃତି ଓ ପରଂପରା ସହିତ ଯଦି ଏ ମାଟିର ଯୁବକମାନେ ପରିଚିତ ନହେବେ ତାହେଲେ ସେମାନଙ୍କର ଭବିଷ୍ୟତ ଅନ୍ଧକାର ହୋଇ ପଡ଼ିବ ।

ଏକଥା ସତ୍ୟ ଯେ ମୃତ ମନ୍ଥନ ଭିତରେ ଯେଭଳି କୌଣସି ଜାତୀୟ ପ୍ରେରଣା ମୁଁ ସୃଷ୍ଟି କରି ପାରିନାହିଁ । କାରଣ ମୁଁ ଜଣେ ପ୍ରତିଷ୍ଠିତ ବ୍ୟକ୍ତି ନୁହେଁ । ଜଣେ ଅତି ସାଧାରଣ ଲୋକର କଥାକୁ ହୁଏତ ଯୁବ ସମାଜ ଗ୍ରହଣ କରି ନପାରେ । ମାତ୍ର ମୋର ଅନ୍ତତଃ ଏତିକି ବିଶ୍ୱାସ ଅଛି ଯେ ଯେଉଁମାନେ ଉଦାର ସେମାନେ ମୋ କଥାକୁ ମାନି ନେବାକୁ ଚଳେଇଲେ କୁଣ୍ଠା ପ୍ରକାଶ କରିବେ ନାହିଁ । ମୁଁ ଶୁଣାକଥା ଉପରେ ଗୁରୁତ୍ୱ ଦେଇ ନାହିଁ, ବରଂ ଯାହା ଅଂଗେ ନିଭେଇଛି ତାକୁ ଲେଖିବା ପାଇଁ ଚେଷ୍ଟା କରିଛି ।

ମୁଁ ସବୁବେଳେ ଇତିହାସକୁ ଭଲ ପାଏଁ । ଭଲପାଏ ତାର ସଂବେଦନଶୀଳ ଦୃଷ୍ଟି ଭଙ୍ଗୀକୁ । ଅନେକ ଏହାକୁ ମୋର ଏକ ଜୀବନୀର ଅଂଶ ବିଶେଷ ବୋଲି ମନେ କରି ଅବଜ୍ଞା ପ୍ରକାଶ କରି ପାରନ୍ତି । ଯଥାର୍ଥରେ ଏହା ମୋର ଜୀବନୀ ନୁହେଁ । ଏହା ହେଉଛି ମୋ ଜାତିର ଜୀବନ । କିନ୍ତୁ ଅତି ଅଳକ୍ଷ୍ୟରେ ମୁଁ ତା ସହିତ ସଂଶ୍ଳିଷ୍ଟ ହୋଇ ପଡ଼ିଛି । ତା ନହେଲେ ଜୀବନର ଏହି ପରିଣତ ବୟସରେ ମୋର ଅବା କି ଦରକାର ଥିଲା ଏହି ସ୍ମୃତି-ଚୟନ କରି । ଏସବୁକୁ ଲେଖି ସାରିଲା ପରେ ଆଜି ହୁଏତ କେହି ମନେ କରିବେ ନାହିଁ ଯେ କେବଳ ନିଜର ପ୍ରୌଢ଼ୀ ପ୍ରଦର୍ଶନ ପାଇଁ ମୁଁ ଏକଥା ଅବତାରଣା କରୁଛି । କାରଣ ଅତି ସାଧାରଣ କଥାକୁ ଅସାଧାରଣ କରିବାର ପ୍ରବୃତ୍ତି ଆମଦେଶରେ ଯଥେଷ୍ଟ ବେଶି ।

ସ୍ଥାନୀୟ ଇତିହାସ ନଜାଣିବା ଫଳରେ ଅନେକ ସମୟରେ ବହୁ ସମସ୍ୟାର ଉଦ୍‌ଭବ ହୋଇଥାଏ । ଅବଶ୍ୟ ମୋର ଏଭଳି ଏକ ପ୍ରଚେଷ୍ଟା ଫଳରେ ଯେ ଏତେବଡ ସମସ୍ୟାର ସମାଧାନ ହୋଇ ପାରିବ ସେଭଳି ଧୃଷ୍ଟତା ମୋର ନାହିଁ ।

ପୁରୁଣା ସ୍ମୃତି ମନୁଷ୍ୟକୁ ଆନନ୍ଦ ଦିଏ । ଯେଉଁ ବ୍ୟକ୍ତି ଏହି ସ୍ମୃତି ସ୍ମରଣ କରନ୍ତି ସେତ ଆନନ୍ଦ ପାଆନ୍ତି, ତାଛଡା ଯେଉଁ ବ୍ୟକ୍ତି ସେହି ସ୍ମୃତିକୁ ଅନୁଶୀଳନ କରନ୍ତି ସେ ମଧ୍ୟ ଅନୁରୂପ ଭାବେ ଆନନ୍ଦ ପାଇଥାନ୍ତି । ମୋ ଜୀବନରେ ଏଭଳି ଅନେକ ଘଟଣା ଘଟି ଯାଇଛି ତାହାକୁ ମୁଁ ବିଶ୍ଳେଷଣ କରିବାକୁ ଏଠାରେ ଉଦ୍ୟମ କରିଛି ମାତ୍ର । ମୁଁ ଯେଉଁ ଅଞ୍ଚଳରେ ବାସ କରେ ସେହି ଅଞ୍ଚଳରେ ଫକୀର ମୋହନଙ୍କ ଭଳି ଯୁଗଜନ୍ମା ପୁରୁଷ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ଜୀବନ କାହାଣୀ ଏହି ମାଟିର ପ୍ରତିଧୂଳିକଣା ସହିତ ମିଶି ରହିଛି । ସେହି ଧୂଳି ନୂଆ ଓଡ଼ିଶାର ପ୍ରତ୍ୟେକ ବ୍ୟକ୍ତିପାଇଁ ପୂଜାର ସାମଗ୍ରୀ । ମାତ୍ର ସମୟ ଯେତେ ଗଡ଼ି ଚାଲିଛି କ୍ରମେ ସେହି ସ୍ମୃତି ଅସ୍ପଷ୍ଟ ହୋଇଯିବା ସ୍ୱାଭାବିକ । ଫକୀର ମୋହନ ଯେଉଁସବୁ କାହାଣୀ ସୃଷ୍ଟି କରିଥିଲେ ତା ପଛରେ କିଛି ନା କିଛି ସତ୍ୟ ଘଟଣା ରହିଛି । ସେହି ସତ୍ୟ ଘଟଣା ସମ୍ପର୍କରେ ଅସିଥିବା ବ୍ୟକ୍ତି ମାନଙ୍କଠାରୁ ମୁଁ ଅନେକ କଥା ଶୁଣିଛି । ସେସବୁକୁ ଭବିଷ୍ୟତ ବଂଶଧର ମାନଙ୍କ ହାତରେ ଟେକି ଦେବା ଏକ ଜାତୀୟ କର୍ତ୍ତବ୍ୟ ବୋଲି ମୁଁ ମନେକରେ । ସେହି କର୍ତ୍ତବ୍ୟରେ ଉଦ୍‌ବୁଦ୍ଧ ହୋଇ ମୁଁ ଏଭଳି ଏକ ପୁସ୍ତକ ରଚନା ପାଇଁ ପ୍ରେରଣା ଲାଭ କରିଛି ।

ଏଠି କହିରଖିବା ଉଚିତ ହେବ ଯେ ଏ ସମ୍ପର୍କରେ ପୂର୍ବରୁ କେତେକ ପ୍ରବନ୍ଧ ମୁଁ ପ୍ରକାଶ କରିଛି ଓ ତାହା ପାଠକର ଚକ୍ଷୁ ସମକ୍ଷକୁ ଆସିଛି, ସେହିସବୁ ପ୍ରବନ୍ଧର ଏକତ୍ରୀକରଣ ହେଉଛି ଏହି ସ୍ମୃତି-ମନ୍ଥନର ପ୍ରଧାନ ଉଦ୍ଦେଶ୍ୟ । ସାଧାରଣ ଭାବେ

ବର୍ଣ୍ଣିବାପାଇଁ ଯେଉଁ ଅନୁଭୂତିର ପ୍ରୟୋଜନ ପଡ଼େ, ଦ୍ରଷ୍ଟା ସେଭଳି ଏକ ଅନୁଭୂତ ନେଇ କେବେ ବର୍ଣ୍ଣିନପାରେ । ତେଣୁ ସେ ସାଧାରଣ ଜଗତଠାରୁ ଦୂରେଇ ଯାଇ ଅନ୍ୟ ଏକ ଜଗତ ସୃଷ୍ଟି କରିବାକୁ ଉଦ୍ୟମ କରିଥାଏ । ଏଭଳି ଏକ ସଙ୍କଳନରେ ସେଭଳି ଏକ ଉଦ୍ୟମ କରାଯାଇଛି କି ନାହିଁ ତାହା ପାଠକମାନେ ବିଚାର କରିବେ ।

ମୋର ଅନ୍ୟ ଏକ ବକ୍ତବ୍ୟ ହେଲା ଯେ ଏହି ମାଟିର ଇତିହାସ ଚର୍ଚ୍ଚା ପାଇଁ ଏକ ପରିବେଶ ସୃଷ୍ଟି କରାଯାଉ, ଏବେବି କେତେ ଲୋକ ଅଛନ୍ତି ଯେଉଁ ମାନଙ୍କଠାରୁ ଏହି ଅଞ୍ଚଳର ଲୁପ୍ତ ଇତିହାସକୁ ପୁନରୁଦ୍ଧାର କରାଯାଇ ପାରେ, ଏଥିପାଇଁ ଆନ୍ତରିକତା ପୂର୍ଣ୍ଣ ଉଦ୍ୟମ ଆବଶ୍ୟକ । ଆଜି ଅନ୍ୟାନ୍ୟ କ୍ଷେତ୍ରରେ ଏହି ଅଞ୍ଚଳ ବିକାଶ ଲାଭ କରୁଛି । ଗୋଟିଏ ସାଂସ୍କୃତିକ ଉତ୍ସବ ହେଲେ ବହୁ ଲୋକ ସମବେତ ହୋଇ ତାକୁ ଉପଭୋଗ କରୁଛନ୍ତି । ମାତ୍ର ସମୟଥିଲା ଗୋଟିଏ ସାହିତ୍ୟ ଅନୁଷ୍ଠାନ ଆରମ୍ଭ କରିବାକୁ ହେଲେ ବହୁ ସାଧାରଣ ଲୋକଙ୍କୁ କାକୁତି ମିନତି କରି ସଭା ସ୍ଥଳକୁ ଅଣାଯାଉଥିଲା, ଏଭଳି ଅନୁଭୂତି ମୋର ଯଥେଷ୍ଟ ଅଛି । ଆଜି କିନ୍ତୁ ପରିବର୍ତ୍ତିତ ପରିସ୍ଥିତିରେ ଆମକୁ ନୂଆ କିଛି ଉଦ୍ୟମ କରିବାକୁ ପଡ଼ିବ । ସେଥିପାଇଁ ଆଜି ସମୟ ଆସିଛି, ଯେଉଁମାନଙ୍କ ପାଇଁ ଇତିହାସର ଖୋରାକ ଦିଆଯାଉଛି ସେମାନେ ଆଗେଇ ଆସନ୍ତୁ । ସେମାନଙ୍କ ଦ୍ୱାରା ଜାତୀୟ ଭାବମୂର୍ତ୍ତି ପ୍ରକାଶ କରାଯାଇ ପାରିବ । ଏବିଷୟରେ ଆଉ ଅଧିକ ଅବତରଣିକା ଦେବାକୁ ମୁଁ ଉଚିତ ମନେ କରୁନାହିଁ । ମୁଁ ପ୍ରଥମରୁ କହି ରଖିଛି ମୁଁ ଜଣେ ଲେଖକ ନୁହେଁ, କେବଳ କର୍ତ୍ତବ୍ୟର ଅନୁରୋଧରେ ଏତକ କରିଛି । ଯଦି ଏଇ ସାମାନ୍ୟ ଚେଷ୍ଟା ଆଦର ଲାଭ କରେ ତେବେ ମୁଁ ମୋର ଶ୍ରମକୁ ସାର୍ଥକ ମନେ କରିବି ।



# ସ୍ମୃତି ତରଙ୍ଗ

ସ୍ମୃତି ହୃଦୟର ଅମର ବନ୍ଧନ ବଡ଼ ବିଚିତ୍ର। ଏହି ସ୍ମୃତି କେତେବେଳେ ପାଠକ ମନକୁ ଆନନ୍ଦ ଦିଏ, କେତେବେଳେ ନିରାନନ୍ଦ ମଧ୍ୟକୁ ଟାଣିନିଏ। ଯେଉଁମାନଙ୍କୁ ନେଇ ସ୍ମୃତିପଟ ରଚନାର ପ୍ରୟାସ ତାହା ତୁଚ୍ଛ କିମ୍ବା ନିଷ୍ପ୍ରୟୋଜନ କହିବା ଭୁଲ୍ ହେବ।

ଜାତି ଯାହାପାଇଁ ଶୋକ କରିଥାଏ, ସେ ହିଁ ନମସ୍ୟ ବ୍ୟକ୍ତି। ବ୍ୟାସକବି ଫକୀର ମୋହନ ଜାତିଠାରୁ ଆଜି ସେହି ସ୍ଥାନ ଦାବୀ କରନ୍ତି। ତାଙ୍କର ସ୍ମୃତି ରକ୍ଷଣ ପାଇଁ ସେ ରଖି ଯାଇଥିଲେ ସ୍ୱହସ୍ତ ନିର୍ମିତ ଶାନ୍ତି କାନନ, ନିଜର ପ୍ରତିମୂର୍ତ୍ତି ଓ ତାଙ୍କର ସାହିତ୍ୟ କୃତି।

ତାଙ୍କ ଜୀବିତାବସ୍ଥାରେ ଶାନ୍ତିକାନନର ଅବସ୍ଥା କ'ଣ ଥିଲା ଓ ଆଜି ତାହା କିଭଳି ଅଛି ବିଶେଷ କରି ମୃତ୍ୟୁ ପରେ ଏହାର ପୁନରୁଦ୍ଧାର ପର୍ଯ୍ୟନ୍ତ ଅବସ୍ଥା ସବୁ ଦେଖିଲେ ତାଙ୍କ ଲିଖିତ "ଶାନ୍ତିକାନନ" ପଦ୍ୟ ସହିତ ଏହାର କୌଣସି ସାମଞ୍ଜସ୍ୟ ମିଳେ ନାହିଁ।

ହାରମୋନିୟମ ତବଲା ସହ ଗାୟକର ସ୍ୱର, ତାଳ, ଲୟ ଭଙ୍ଗ ହେଲେ ଶ୍ରୋତା ଯେପରି ତାହା ଶୁଣିବା ପାଇଁ ମନକୁ ଦୃଢ଼ପ୍ରୟ ହଏ ନାହିଁ, ସେହିପରି ଏହି ଶାନ୍ତିକାନନର ବିଳୟ ଅବସ୍ଥାର ଇତିବୃତ୍ତି ଓ ପୁନରୁଦ୍ଧାର ପରେ 'ଶାନ୍ତିକାନନ' ପଦ୍ୟ ପଢ଼ି ପାଠକର ମନ ଦୋହୁଲା ଦୋଳିକର ଦଶା ଭଜିବ, ଏଥିରେ ସନ୍ଦେହ ନାହିଁ।

ଆଜି ସେହି ସ୍ମୃତି ବିଜଡ଼ିତ ଘଟଣାକୁ ଲେଖିଲା ବେଳେ ବିସ୍ମୃତ ଅତୀତକୁ ଧରି ହେଉ ନାହିଁ, ତଥାପି ବିଗତ ବର୍ଷମାନଙ୍କର ସ୍ମୃତି ମସ୍ତିଷ୍କର ସ୍ନାୟୁ ଶ୍ରେଣୀକୁ ଆନ୍ଦୋଳିତ କରି ଯେଉଁ ସ୍ମୃତିପଟ

ରଚନା କରିବାର ପ୍ରୟାସ କରିଛନ୍ତି ତାହା ତୁଚ୍ଛ ନୁହେଁ । ଶ୍ରୁତିକଣ୍ଟୁ ସ୍ଥାନେ ସ୍ଥାନେ ଘଟିଥିଲେ ମଧ୍ୟ ଏହା ସତ୍ୟ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଶ୍ରୁତିକଣ୍ଟୁତା ପ୍ରକାଶ ପାଇବାର ଭୟ ନାହିଁ । ସମୟ, ତାରିଖ, ବର୍ଷ, ବାର ଯେପରି ଲେଖାରେ ଚଳାଇବାର ପ୍ରବୃତ୍ତି ଅନେକଙ୍କର ଅଛି । ଏହା ମଧ୍ୟ ଏକ ସୁଗୁଣ ମଧ୍ୟରେ ଗଣ୍ୟ । ମାତ୍ର ବ୍ୟତିକ୍ରମ ସବୁଠାରେ ଥାଏ । ତେଣୁ ଯେଉଁ ବର୍ଷ, ବାର, ଦିବସ ଲେଖାର ସୁଗୁଣ, ସବୁ କ୍ଷେତ୍ରରେ ପ୍ରୟୋଜନ ନୁହେଁ । କେତେକ କ୍ଷେତ୍ରରେ ତାହା ଶୁଷ୍କତା ପ୍ରକାଶ କରିଥାଏ ମାତ୍ର । ଯେଉଁ ଶାନ୍ତକାନନ ବିଷୟ ଯେପରି ଏହି ଲେଖା, ସେହି ଉଦ୍ୟାନରେ ବହୁ ସ୍ଥାନରୁ ଆଗତ ଭାଷାବିତ୍, ପଣ୍ଡିତ, ଲେଖକ, ସାହିତ୍ୟିକ, ଐତିହାସିକ, ଗବେଷକ, ରଥୀମାନଙ୍କର ପଦଧୂଳିରେ ପଡ଼ି ମଲ୍ଲିକାଶ-ପୁର ଗ୍ରାମ ତଥା ବାଲେଶ୍ୱର ମାଟି ଧନ୍ୟ ହୋଇଛି । ଏହା ଆମର ଭାଷା ରକ୍ଷାକାରୀ ସେନାପତିଙ୍କର କୃତିତ୍ୱ ବ୍ୟତୀତ ଅନ୍ୟ କିଛି ନୁହେଁ । ପୁନଶ୍ଚ ଭବିଷ୍ୟତ ବଂଶଧର ମାନଙ୍କ ମଧ୍ୟରୁ ଭାବୁକ, ଦାର୍ଶନିକ, ଐତିହାସିକ ସାହିତ୍ୟ ରଥୀ ମାନଙ୍କର ପଦରେଣୁ ପଡ଼ିବାରି ସମ୍ଭାବନା ବେଶି ବୋଲି ପରିଲକ୍ଷିତ ହେଉଛି ।

ଫକୀର ମୋହନଙ୍କୁ ଏ ଯୁଗର ପ୍ରଖ୍ୟାତ ସାହିତ୍ୟିକ, ସମାଲୋଚକମାନେ ଶତାବ୍ଦୀର ଯୁଗସ୍ରଷ୍ଟା, ସମାଜ ସଂସ୍କାରକ, ଜାତି ପ୍ରଖ୍ୟାପକ ବୋଲି ବର୍ଣ୍ଣନା କରି ଭୂରି ଭୂରି ପ୍ରଶସ୍ତି ଗାନ କରି ସାରିଲେଣି । ସାହିତ୍ୟ କୃତିର ସମାଲୋଚନାର ସ୍ରୋତ ବହିଚାଲିଥିଲା ବେଳେ ତାଙ୍କର ଦର୍ଶନ ଜାତି ପ୍ରୀତି, ହିତାଶୟ ପ୍ରଣୟିନୀ ପ୍ରତି ଅନୁରକ୍ତି, ଶାନ୍ତି ପାଇଁ ପୁଷ୍ପୋଦ୍ୟାନ ସ୍ୱହସ୍ତ ନିର୍ମିତ ବହୁ କୃତି ଲୁଚାଯାଇଥିଲେ ହେଁ, ସେ ସମ୍ବନ୍ଧରେ କେହି ଲେଖନୀ ଚାଳନା କରି ଭବିଷ୍ୟତ ପୁରୁଷମାନଙ୍କ ପାଇଁ ରଖି ଯାଇ ନାହାନ୍ତି । ଏହି ସ୍ମୃତିର କେତେକଂଶ ଉଦ୍ଧାର ଭବିଷ୍ୟତର ବଂଶଧର ମାନଙ୍କୁ ନିଶ୍ଚୟ ଏହାର ଗବେଷଣା ପାଇଁ ଖୋରାକ ଯୋଗାଇବ ।

—୦—

# ବ୍ୟାସ କବିଙ୍କ "ଶାନ୍ତି କାନନ" ସୃଷ୍ଟିର ଉଦ୍ଦେଶ୍ୟ

ମନୁଷ୍ୟ ଯୁଗ ଯୁଗେ ରୂପ ଓ ସୌନ୍ଦର୍ଯ୍ୟର ଦାସ । ବ୍ୟାସକବି ଦ୍ୱିତୀୟା ପ୍ରଣୟିନୀର ବିଚ୍ଛେଦ ଦୁଃଖ ଭୁଲିବା ପାଇଁ ସୃଷ୍ଟିର ଶ୍ରେଷ୍ଠ ସୌନ୍ଦର୍ଯ୍ୟ ପୁଷ୍ପୋଦ୍ୟାନ ଓ ପୁଷ୍ପଗନ୍ଧ ଉପଭୋଗରେ ଜୀବନର ସ୍ତ୍ରୀ ବିୟୋଗାନ୍ତ ଦଗ୍ଧ ହୃଦୟ ଦୁଃଖକୁ ଉପସମ ପାଇଁ ସେ ପ୍ରସ୍ତୁତ କରିଥିଲେ ଏକ ସୌନ୍ଦର୍ଯ୍ୟ ପୂର୍ଣ୍ଣ ଫଳ ଓ ପୁଷ୍ପ ଉଦ୍ୟାନ ।

ଉଦ୍ୟାନରେ ପୁଷ୍ପ, ଫଳ, ପକ୍ଷୀ, ବିବିଧ ପ୍ରକାର ମତ୍ସ୍ୟ, ମନ ଦୁଃଖ ହାରିଣୀ କେକା କେକୀ ମାନ ରଖି ସେହି ସ୍ୱହସ୍ତ ନିର୍ମିତ ଉଦ୍ୟାନର ପଣତ ତଳେ ଆତ୍ମଗୋପନ କରି ସ୍ତ୍ରୀ ବିୟୋଗ ଦୁଃଖ ଭୁଲିଥିଲେ । ତାଙ୍କର ଅନ୍ତିମ ଜୀବନ ସେହିଠାରେ ଅତିବାହିତ ହୋଇଥିଲା । ଭଗବତ କୃପାଭିକ୍ଷା ତାଙ୍କ ଜୀବନର ଥିଲା ଏକମାତ୍ର କାମନା । ପ୍ରତ୍ୟେକ ମନୁଷ୍ୟର ଆଧ୍ୟାତ୍ମିକ ଭାବ ଯଦି ଜାଗ୍ରତ ନହୁଏ, ତାର ଶାରୀରିକ, ମାନସିକ ବିକାଶ ଯେତେ ପ୍ରବଳ ହେଉନା କାହିଁକି, ମନୁଷ୍ୟର ଉନ୍ନତି ହୋଇ ପାରିବ ନାହିଁ ବୋଲି ସେ ମତ ପ୍ରକାଶ କରିଥିଲେ ।

ଆଜକାଲି ପରୀକ୍ଷାରୁ ଜଣାଗଲାଣି କ୍ଷମତା ଓ ବିଜ୍ଞାନ ଯେତେ ଶ୍ରେଷ୍ଠ ହେଲେ ମଧ୍ୟ ନୈତିକତା ଓ ଆଧ୍ୟାତ୍ମିକତା ହୀନ ମାନବ କଦାପି ଜୀବନରେ ପରିପୂର୍ଣ୍ଣତା ଲାଭ କରିବାର ଜଣାଯାଏ ନାହିଁ । ସଭ୍ୟଜାତି ଯେତେ ବିଜ୍ଞାନର ଉନ୍ନତି କରି ବଡ଼ପଣିଆ ଦେଖାଇଲେ ମଧ୍ୟ ତାହା ସଭ୍ୟତାର ବିକାଶ ପଥରେ ଚୂଡ଼ାନ୍ତ ବୋଲି କୁହାଯାଇ ପାରୁନାହିଁ । ଡଃ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ଭାଷାରେ—

* "Civilization in an act of spirit not of body and mind"

---

* Kalpapativani vharan— Journal— vol— XXI No 20 Page — 22

ଶାନ୍ତି ଖୋଜିବାକୁ ଥିଲା କବିଙ୍କର ସଦା ସର୍ବଦା ଚେଷ୍ଟା । ମନୁଷ୍ୟ ମାତ୍ରେ ଶାନ୍ତିର ଅନୁସନ୍ଧିତ୍ସୁ । ଙ୍ଗରଚଲ୍ଲୀ ରାଧାକୃଷ୍ଣନ ତାଙ୍କର ଏକ ଭାଷଣରେ କହିଛନ୍ତି—

Religion Consists in doing Justice in loving mercy and making our fellow Creature happy.

କ୍ୟାସକଣ୍ଠ ଯେ ଦାର୍ଶନିକ ନଥିଲେ, ତାହା କୁହାଯାଇ ନପାରେ । ସେ ଦର୍ଶନ ତତ୍ତ୍ୱକୁ ଶେଷ ଜୀବନ ପର୍ଯ୍ୟନ୍ତ ସମ୍ବଳ କରି ଧରି ରଖିଥିଲେ । ଏହା ତାଙ୍କର 'ଛାନ୍ଦୋଗ୍ୟୋପନିଷଦ'ର ଲେଖାରୁ ପ୍ରତିପୂମାନ । ଶାନ୍ତି କାନନ ଭିତରେ ସେ ପ୍ରସ୍ତୁତ କରି ଯାଇଛନ୍ତି ସର୍ବ ଧର୍ମ ସମନ୍ୱୟ ସ୍ତମ୍ଭ । ଏକ ମନ୍ଦିରାକୃତି ଚଉପୀଠି ଉପରେ ରଖାଇ ଯାଇଛନ୍ତି— ନିଜ ଧର୍ମର ମତବାଦ । ଶାନ୍ତି ପାଇଁ ଈପ୍ସିତ ଧନ ପୁଷ୍ପୋଦ୍ୟାନ ମଧ୍ୟରେ ସେ ପ୍ରସ୍ତୁତ କରି ଯାଇଛନ୍ତି । ଯୁଗ ଅନୁସାରେ ଧର୍ମ ପ୍ରବର୍ତ୍ତକମାନେ ନିଜ ଧର୍ମ ପ୍ରଚାର ନାମରେ ଯେଉଁ ବୈଷୀକା ସୃଷ୍ଟି କରି ଯାଇଛନ୍ତି ଓ କରୁଛନ୍ତି ତାହା ଧର୍ମାନ୍ଧ ମାନଙ୍କୁ ଜଣାଇ ତାହାର ପରିସମାପ୍ତିର କଥା ସେ କହି ଯାଇଛନ୍ତି ।

ଫକୀରମୋହନ ତାହାର ସମାଧାନ ପନ୍ଥା ଖୋଜ "ଅଦ୍ୱୈତବାଦ" ଚଉପଦୀରେ ଯାହା ଲେଖିଯାଇଛନ୍ତି— କେତେକଙ୍କ ମତରେ କୁଜାବର ସନ୍ୟାସୀ ସାଧୁ ସୁନ୍ଦର ଦାସଙ୍କ ଠାରୁ ତାହା ଗ୍ରହଣ କରିଥିବା କୁଜାବର ଲେଖକଙ୍କ ମତ । * ମାତ୍ର ଡଃ ନଟବର ସାମନ୍ତରାୟଙ୍କ ମତରେ ଫକୀରମୋହନ 'ଅଦ୍ୱୈତବାଦ ଚୌପଦୀ' ଛନ୍ଦରେ ସାଧୁ ସୁନ୍ଦର ଦାସ କୁଜାବର ସନ୍ୟାସୀଙ୍କ ଧର୍ମମତ ଏ କବିତାର ପ୍ରକୃତ କର୍ତ୍ତା କିମ୍ବା ଏହା ସହିତ କିଛି ସମ୍ପର୍କ ଥାଇ ପାରେ କି ନାହିଁ, ତାହା ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି ।

---

* 'କୁଜାବର ପଥ'— ଦ୍ରଷ୍ଟବ୍ୟ

※ ଡ: ନଟବର ସାମନ୍ତରାୟ ଲେଖିଛନ୍ତି "ଫକୀରମୋହନଙ୍କର ଏହି ଚୌପଦୀ ହରିଣୀ ଜବ ହନ୍ତୁ ସୁନ୍ଦର ଦାସଙ୍କର"— ତାହା ହରିଣୀ ଜବ ସୁନ୍ଦର ବିଳାସ ଓ ଜ୍ଞାନ କମ୍ପା ସୁନ୍ଦର ବିଳାସ କାବ୍ୟରୁ ଅନୁଦିତ— ତାହା କହି ହେଉ ନାହିଁ । ତାଙ୍କର ସର୍ବ ଧର୍ମ ସମନ୍ୱୟ ସୂତ୍ରରେ ସେ ହକୁଧର୍ମୀ ଏକ ବୋଲି ଦେଖାଇବାର ଚେଷ୍ଟା କରିଅଛନ୍ତି । ତା'ର ପାଳନର ବଧି ଯେଉଁ ଶିକ୍ଷିତ ଅଶିକ୍ଷିତ ମଧ୍ୟରେ ନିଜର ଧର୍ମ ସମ୍ବନ୍ଧୀୟ ଆସ୍ଥାଳନର ଭୁଲ ପନ୍ଥାରୁ ନିବୃତ୍ତ ହେବାର ପଥ ପରିଷ୍କାର କରିବାର ଚେଷ୍ଟାର ଉଦ୍ଦେଶ୍ୟ ନିହିତ ଥିବାର ଦେଖାଯାଏ ।

ମନୁଷ୍ୟର କୀର୍ତ୍ତିହିଁ ତା'ର ମନର ଭାବକୁ ରୂପାୟିତ କରିଥାଏ । ସେ କୀର୍ତ୍ତିରୁ ହିଁ ମନସ୍ତାତ୍ତ୍ୱିକ ଉପାଦାନ ବିଶ୍ଳେଷଣ ଦ୍ୱାରା ପରିଦୃଷ୍ଟ ହେବାର ସମ୍ଭାବନା ହବୁବେଳେ ଥାଏ । ଏତେଦ୍ ବ୍ୟତୀତ ବ୍ୟାସକବିଙ୍କର ସର୍ବ ଧର୍ମ ସମନ୍ୱୟ ସୂତ୍ରରେ ଥିବା ଖୋଦିତ ମୂର୍ତ୍ତି ଓ ତାଙ୍କଦ୍ୱାରା ଲିଖିତ ମନ୍ତ୍ରବାକ୍ୟ ପାଠକଲେ ଯେ କେହି ଜାଣି ପାରିବ ଯେ ସେ କୌଣସି ଧର୍ମର ମୂଳ କମ୍ପା ପ୍ରଧାନ ଦେବତାଙ୍କୁ ସ୍ଥାନ ଦେଇ ନାହାନ୍ତି । ସେ ଥିଲେ ଜଣେ ମାନବ ଧର୍ମୀ । ସେ ଖୋଦିତ କରି ନାହାନ୍ତି ସୂତ୍ରରେ ଇନ୍ଦ୍ର, ବରୁଣ, ମରୁତ, ଆଦିତ୍ୟ, ରୁଦ୍ର, ବିଷ୍ଣୁ ଓ ଶିବଙ୍କୁ । ତାଙ୍କ ରଚିତ ଛାନ୍ଦୋଗ୍ୟୋପନିଷଦ, ଅବସର ବାସରେ ଓ ପୂଜାଫୁଲ ଇତ୍ୟାଦି ପଦାବଳୀରେ ଦେଖାଇଛନ୍ତି ଧର୍ମର ଲକ୍ଷ୍ୟ । ସେ ଶକ୍ତି ଏକେଶ୍ୱର-ବାଦ ଶକ୍ତି । ମନୁଷ୍ୟ ! ଏହି ବିଶ୍ୱର ମୂଳାଧାର ଶକ୍ତିଠାରେ ଶ୍ରଦ୍ଧା ଭକ୍ତି ଅର୍ଘ୍ୟ ନିବେଦନ କର ବୋଲି ସେ କହୁଥିଲେ ।

ଶ୍ରୀମଦ୍ ଭଗବତ୍ ଗୀତାରୁ ତାଙ୍କ ରଚିତ ପଦ୍ୟାବଳୀରେ ସେ ଚତୁର୍ବିଧ ଭକ୍ତ ଦର୍ଶାଇ ଅଛନ୍ତି । ତାହା ଆର୍ତ୍ତ, ଅର୍ଥାର୍ଥୀ ଜ୍ଞାନୀ ଏବଂ ଜିଜ୍ଞାସୁ । ସ୍ୱହସ୍ତ ନିର୍ମିତ ଶାନ୍ତି କାନନରେ ସେ ଗୋଟିଏ ମିନ

---

※ ଝଙ୍କାର— ସପ୍ତମ ବର୍ଷ, ଷଷ୍ଠ ସଂଖ୍ୟା ।

ମନ୍ଦିର ପ୍ରସ୍ତୁତ କରି ମନ୍ଦିରର ଦ୍ୱାର ରୁଦ୍ଧ ଅବସ୍ଥାରେ ରଖି ଯାଇଛନ୍ତି । ମାନବ ଯେ କୌଣସି ଧର୍ମରେ ଦୃଢ଼ ବିଶ୍ୱାସ ରଖି ଯେ କୌଣସି ଦ୍ୱାରରେ ଆଘାତ କଲେ ସେ ଦ୍ୱାର ତା' ପାଇଁ ଉନ୍ମୁକ୍ତ ହେବ । ମାତ୍ର ସେ ଦ୍ୱାରରେ ଆଘାତ କରିବା ପୂର୍ବରୁ ତାଙ୍କୁ ବହୁ ବାଧାବିଘ୍ନ କଣ୍ଟକିତ ପଥ ଅତିକ୍ରମ କରିବାକୁ ହୋଇଥାଏ । ତେଣୁ ସେ ମିନ ମନ୍ଦିର ଚତୁର୍ଦ୍ଦିଗରେ ପ୍ରସ୍ତରମାନ ଥୋଇ ସେଥିରେ କଣ୍ଟକ ଜଡ଼ିତ ସିଜୁ ଗୁଳ୍ମମାନ ସଜ୍ଜିତ ଅବସ୍ଥାରେ ରଖାଇ ଥିଲେ । ଆଜି ସେ ମିନ ମନ୍ଦିର ରହିଛି, ମାତ୍ର ବୃଟିଶଙ୍କ ଅଷମତା ହେତୁ କ୍ଷମତା ଆସନ ଗ୍ରହଣକାରୀ, କୁରୁଚିପୂର୍ଣ୍ଣ ପୌରପାଳ ଓ ତାଙ୍କର କର୍ମଚାରୀ ସେ ପ୍ରସ୍ତର ଖଣ୍ଡମାନ ସ୍ଥାନାନ୍ତର କରି ତାଙ୍କର କଣ୍ଟକ ସିଜୁମାନ ସମୂଳେ ନଷ୍ଟ କରିଦେଇ ଅଲ୍ପଦିନ ତଳେ ପ୍ରସ୍ତର ଓ କଣ୍ଟକ ସିଜୁ ସ୍ଥାନରେ ଇଟା ଓ ସିମେଣ୍ଟର ଏକ ମଣ୍ଡପ ପ୍ରସ୍ତୁତ କରି ତାଙ୍କର ଧର୍ମ ସମ୍ବନ୍ଧୀୟ ଅଭିମତକୁ ଚିରଦିନ ପାଇଁ ଲୁପ୍ତ କରି ସାରିଛନ୍ତି ।

* ବନ ଉଛତାରେ ପେଣ୍ଟ, ଯୋତା, ଚର୍ମ୍ମକନ, ଗୋଟିଏ ହାତରେ ଗୋଟିଏ ଯଷ୍ଟି ଅନ୍ୟ ହସ୍ତରେ ଏକ ପୁସ୍ତକ ସହ ମସ୍ତକରେ ପଗଡ଼ି ପରିଧାନ ଅବସ୍ଥା ଦେଖାଇ ନିଜର ପ୍ରତିକୃତି କୁଶଳୀ ଓଡ଼ିଆ କାରିଗର ଦ୍ୱାରା ସେ ନିର୍ମାଣ କରାଇଛନ୍ତି । ସେହି ମୂର୍ତ୍ତି ନିର୍ମାଣକାରୀ ହେଉଛନ୍ତି ୰ ଆନନ୍ଦ ଚନ୍ଦ୍ର ମିଶ୍ର । ସେ ବାଲେଶ୍ୱର ଜିଲ୍ଲାସ୍କୁଲର ଡ୍ରଇଂ ଶିକ୍ଷକ ଥିଲେ । ଶିଳ୍ପୀ କଲିକତାରୁ ଅଧ୍ୟୟନ ଶେଷ କରିଥିଲେ । ବ୍ୟାସକବି ନିଜ ହାତରେ ଶାନ୍ତି କାନନ ମଧ୍ୟରେ ଯେଉଁ ଗୃହଘର ନିର୍ମାଣ କରିଥିଲେ, ସେଠାରେ ସେ ତାଙ୍କୁ ରହିବାକୁ ସ୍ଥାନ ଦେଇଥିଲେ । ମୋର ପରମ ହିତାକାଙ୍କ୍ଷୀ ଗୋଲକ ଚନ୍ଦ୍ର ମହାପାତ୍ରଙ୍କ ଦ୍ୱାରା ମୁଁ ଏହା ଶୁଣିଅଛି ।

ତାଙ୍କ ମତରେ ଏହି ଓଡ଼ିଆ ଜାତିର ନାରୀ ମାନଙ୍କର ଉତ୍ତରୀୟ ଥିଲାବେଳେ ପୁରୁଷ ମାନଙ୍କର ମସ୍ତକରେ ପଗଡ଼ି ନାହିଁ ।

* ଶିଳ୍ପୀ ଆନନ୍ଦ ମିଶ୍ରେ— (ଉତ୍କଳ ଭ୍ରମଣଂ ଦ୍ରଷ୍ଟବ୍ୟ)

ଫକୀରମୋହନ ସେହି ଶିଳ୍ପସ୍ଥାଣ ଓଡ଼ିଆ ଜାତିର ପୋଷାକରେ ଏକ ପ୍ରତୀକ ରୂପେ ପ୍ରଚଳନ କରାଇବା ପାଇଁ ନିଜେ ତାହା ପରିଧାନ କରି ଦେଖାଇ ଯାଇଛନ୍ତି । ଉତ୍କଳ ଗୌରବ ଓ ବ୍ୟାସକବି ଦୁଇଜଣ ସେ ଦିଗରେ ଅଗ୍ରଗଣ୍ୟ ।

ଜଡ଼ବତାବସ୍ଥାରେ ଜଣେ ବୃଦ୍ଧ ଶିଳ୍ପୀର ଏପରି ପରିକଳ୍ପନା କାହିଁକି ବୋଲି ସ୍ୱତଃ ପ୍ରଶ୍ନ ଆସେ । ଏହାର ଉତ୍ତର ଅନୁସନ୍ଧାନୀ-ମାନେ ତାଙ୍କର ଜୀବନ ଚରିତ ଓ ଇଚ୍ଛାପତ୍ର ପାଠ କରି ସାରିବା ପରେ ଜାଣିପାରିବେ କିପରି ଫକୀରମୋହନଙ୍କୁ ପୂର୍ବରୁ ଜଣାଯାଇ-ଥିଲା ଯେ ତାଙ୍କର ଦାୟାଦମାନେ କଦାପି ତାଙ୍କୁ ସ୍ମରଣ କରିବେ ନାହିଁ । ତାଙ୍କର ଦେଖିଆଲି ମନର କଳ୍ପନା ତାଙ୍କୁ ସେହି ଦିଗକୁ ଟାଣି ନେଇଥିଲା ।

ଶାନ୍ତିକାନନରେ ଦୁଇଗୋଟି ପୋଖରୀ, ଗୋଟିକରେ ଶତଦଳ ପଦ୍ମ, ଅନ୍ୟଟି ପାନୀୟ ଜଳର ବ୍ୟବହାର ପାଇଁ । ସେଥିରେ ଇଟା ଚୂର୍ଣ୍ଣର ପକ୍କାଘାଟ ଓ ଘାଟକର ଦୁଇ ପାଖରେ ଦୁଇଟି ବଡ଼ ମନୁଷ୍ୟର ଉଚ୍ଚତାରେ ଜଗୁଆଳୀ ଚୂନ ଇଟାରେ ପ୍ରସ୍ତୁତ କରି ଛିଡ଼ା କରାଇ ଯାଇଥିଲେ । ଦୂରରୁ ଦେଖିଲେ ଠିକ୍ ସୈନ୍ୟବାହିନୀରେ କାର୍ଯ୍ୟ କରୁଥିବା ସୈନିକ ଭଳି ପେଣ୍ଟ ଜାମା ସେଥିରେ ବଡ଼ ବଡ଼ ବୋତାମ ଓ କମରବନ୍ଧ ପିନ୍ଧାଇ ବନ୍ଧୁକ ହସ୍ତରେ ଦୁଇଟି ପ୍ଲାଟଫର୍ମ ଉପରେ ଜୀବନ୍ତ କରି ଛିଡ଼ା କରାଇବାର ଆନନ୍ଦ ସେ ନିଜେ ନେଇ ଅନ୍ୟ ମାନଙ୍କ ମନରେ ଖୁସି ଆଣିବାର ପରିକଳ୍ପନା ଥିଲା ।

ଶାନ୍ତିକାନନର ଶୋଭାବର୍ଦ୍ଧନ ଓ ଦର୍ଶକମାନଙ୍କର ଚିତ୍ତ ଆକର୍ଷଣ ପାଇଁ ଏକ ସୁଗଭୀର ପକ୍କାକୁଣ୍ଡ ପ୍ରସ୍ତୁତ କରାଯାଇଥିଲା । କୃତ୍ରିମ ନଳ ଲଗାଇ ଜଳ ପ୍ରବେଶ ଓ ନିଷ୍କାସନ ପାଇଁ ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ପୁଷ୍କରିଣୀରେ ନାନାପ୍ରକାର ମତ୍ସ୍ୟ କ୍ରୀଡ଼ା କରୁଥିଲେ । ଗଡ଼ଜାତ ମାନଙ୍କରେ ଦେଓ୍ୱାନ ରହି ନାନା ପ୍ରକାର

ବୃକ୍ଷ ଆଣି ସେ ଶାନ୍ତିକାନନରେ ରୋପଣ କରିଥିଲେ । ବୃକ୍ଷ ମୂଳରେ ପିଣ୍ଡିମାନ ପ୍ରସ୍ତୁତ କରି ସେଠାରେ ନାନା ପ୍ରକାର ପଦ୍ୟ ଲେଖି ନିଜ ରସିକତାର ପରିଚୟ ଦେଇଥିଲେ । ଆଜି ସେ ସୌନ୍ଦର୍ଯ୍ୟର ଚିହ୍ନ ବର୍ତ୍ତି ମଧ୍ୟ ଦେଖିବାକୁ ମିଳେ ନାହିଁ ।

ସେହି କଳା-ସୌନ୍ଦର୍ଯ୍ୟର ସାକ୍ଷୀ 'ଶାନ୍ତିକାନନ' ଆଜି ଶ୍ମଶାନରେ ପରିଣତ ହୋଇଛି । ଯେଉଁ ଶାନ୍ତିକାନନ ଦିନେ ତାଙ୍କ ଦିବଙ୍ଗତା ପତ୍ନୀଙ୍କର ବିୟୋଗ ଦୁଃଖ ଅପନୋଦନ ପାଇଁ ଉଦ୍ଦିଷ୍ଟ ଥିଲା, ତାହା ଆଜି କ୍ଷମତା ସିଂହାସନ ଆରୋହଣେଚ୍ଛୁଙ୍କ ବିଳାସ ଭୂମି ହୋଇଛି । ସେ ପୌରପାଳ ୧୯୫୪ ମସିହାରୁ କ୍ଷମତା ସିଂହାସନ ଆରୋହଣକାଂକ୍ଷୀ ହୋଇଥିବା ହେତୁ ଆଜି ଶାନ୍ତି କାନନର ଏ ଦଶା ।

## ଶାନ୍ତିକାନନ ଜମିର ଚିହ୍ନଟ:—

ଯେଉଁ ପତ୍ନୀଙ୍କର ପ୍ରେରଣାରେ ବ୍ୟାସକବି ଲେଖନୀ ଗ୍ରହଣ କରିଥିଲେ ସେହି କୃଷ୍ଣାକୁମାରୀଙ୍କ ମୃତ୍ୟୁ ପରେ ବ୍ୟାସକବି ଶାନ୍ତି-କାନନକୁ କରିଥିଲେ ତାଙ୍କ ସାଧନାର କେନ୍ଦ୍ର । ସେହି ଉଦ୍ୟାନ କବିପତ୍ନୀଙ୍କର ମନୋହାରିଣୀ ଥିଲା । ଶାନ୍ତି କାନନକୁ ପରିପୂର୍ଣ୍ଣ କରି ମୃତ୍ୟୁର କିଛି କାଳ ପୂର୍ବରୁ ସେ ଲେଖିଥିଲେ—

"ରେ ଶାନ୍ତି କାନନ ମୋର ଜୀବନ ସମ୍ବଳ
ନେବେ ତୃପ୍ତି ପ୍ରାଣାରାମ ବିଶ୍ରାମର ସ୍ଥଳ
ନନ୍ଦନ କାନନ ସ୍ୱର୍ଗେ ଶୁଣିଛି ପୁରାଣେ
ତୋହର ମହିମା ମର୍ତ୍ତ୍ୟେ ଅନୁଭବେ ପ୍ରାଣେ

× × × ×

ପୂର୍ଣ୍ଣ କର ମୋ  କାମନା ହେ ଶାନ୍ତକାନନ
ତୋ ସେବାରେ ଗତ ହେଉ ଅନ୍ତିମ ଜୀବନ ।

ଏହି ଶାନ୍ତକାନନ ପୂର୍ବ ବନ୍ଦୋବସ୍ତରେ ମୌଜେ ଚନ୍ଦ୍ରାଗଡ଼ (ଚଳତ ବନ୍ଦୋବସ୍ତରେ ଚନ୍ଦ୍ରାଗଡ଼ ମୌଜା ଲୋପ ହୋଇଛି । ମାତ୍ର ଚନ୍ଦ୍ରାଗଡ ବୋଲି ଗୋଟିଏ ପୋଖରୀ ଏବେ ସୁଦ୍ଧା ରହିଛି ଓ ସେହି ନାମରେ ରହିଥିବ ମଧ୍ୟ । * ଫକୀରମୋହନ ସେ ପୋଖରୀଟି ଖନନ କରିଥିଲେ । ପୂର୍ବରୁ ଜଳାଶୟ, ବୃକ୍ଷରୋପଣ, ଦେବାଳୟ, ବିଦ୍ୟାଳୟ, ଚିକିତ୍ସା କେନ୍ଦ୍ର ପ୍ରଭୃତି ପ୍ରତିଷ୍ଠା ମହତ୍ ଧର୍ମ ବୋଲି ଗୁରୁତ୍ୱ ଦିଆଯାଉଥିଲା ।) ସେତେବେଳେ ଯେଉଁପରି ପାନୀୟ ଓ ବ୍ୟବହାର ଜଳର ଅଭାବ ଥିଲା, ତାହା ଏ ବୈଜ୍ଞାନିକ ଯୁଗରେ ଲୋକେ ସହଜେ ବୁଝିବାକୁ ଅକ୍ଷମ । ଦେଶ, ବିଦେଶୀ ରଜ୍ଜୁରେ ବନ୍ଧା । କୂପର ସାକ୍ଷାତ୍ ସଚରାଚର ନଥିଲା । ଜଳାଭାବରେ ଲୋକ ସ୍ୱାସ୍ଥ୍ୟ କିପରି ଥିବ ତାହା ସହଜେ ଅନୁମେୟ । ଚନ୍ଦ୍ରାଗଡ଼ ମୌଜା ଲୋପ କରାଯାଇ ଏବେକାର ମଲ୍ଲିକାଶ-ପୁର ମୌଜା ସହିତ ସାମିଲ କରାହୋଇଛି ।

ଏହି ମଲ୍ଲିକାଶପୁର ଓ ଚନ୍ଦ୍ରାଗଡ଼ ମୌଜାକୁ ବିଚ୍ଛିନ୍ନ କରୁଅଛି ଏକ ରାଜପଥ । ରାଜପଥର ଉତ୍ତରକୁ ଶାନ୍ତକାନନ, ଦକ୍ଷିଣରେ ମଲ୍ଲିକାଶ-ପୁର * ବ୍ୟାସକବିଙ୍କର ଗୃହସ୍ଥଳୀ, ପୋଖରୀ, ବାଗ୍‌ବଗିଚା ଓ ତାଙ୍କର ଦ୍ୱିତୀୟା ପତ୍ନୀ * କୃଷ୍ଣା କୁମାରୀଙ୍କ ସମାଧି ।

ପୂର୍ବଭୂମି ମାପ ବନ୍ଦୋବସ୍ତରେ ଏହାର ରକ୍ଟ ମୌଜେ ଚନ୍ଦ୍ରାଗଡ ତୌଜି ନମ୍ବର ଏକଶତ ସତେଇଶ, ଥାନା ନମ୍ବର ଦୁଇଶହ ତେର, ଖାତା ନମ୍ବର ଅଣସତୁରୀ—ଅନାବାଦୀ ଅର୍ଥାତ୍ ଯାହାକି ଜମିଦାର ଅଧୀନରୁ ଅନ୍ୟ କେହି ନେଇ ଯୋତ ବନ୍ଦୋବସ୍ତ କରିଇ ନଥିଲେ । ମୋଟ ଜମିର ପରିମାଣ ଏକ ଏକର ଅଣୀ ଡେସିମିଲ ।

---

* ଫକୀରମୋହନଙ୍କ "ଶାନ୍ତକାନନ" ପଦ୍ୟ ଦ୍ରଷ୍ଟବ୍ୟ ।

* ଜମି ଦଖଲ ନେବା ପାଇଁ ଜନସାଧାରଣଙ୍କ ପ୍ରସ୍ତାବ: ଚତୁର ଦେଓ୍ୱାନ, ଗଡ଼ଜାତରେ କାର୍ଯ୍ୟ କରୁଥିବାବେଳେ, ମୋଗଲବନ୍ଦି ଜିଲ୍ଲା ମାନଙ୍କରେ ଜମିଦାରୀ ଖରିଦ କରି ନିଜେ ଜମିଦାର ଥିଲେ । ଦେଓ୍ୱାନୀ କାର୍ଯ୍ୟ କରୁଥିବା ବେଳେ ଗଡ଼ଜାତ ରାଜାମାନଙ୍କୁ ନିର୍ବୋଧ ଦେଖି ନେତେ-କଙ୍କୁ ଗ୍ରଗଳ ଭଳ ଚରାଇ ଆସିଥିଲେ । ଇଂରେଜ ସାହେବମାନେ ଗଡ଼ଜାତ ଉପରେ କର୍ତ୍ତୃତ୍ୱ ରଖିଥିଲାବେଳେ, ସେମାନଙ୍କୁ ମଧ୍ୟ ଚତୁରତା ବଳରେ ଠକ ଦେଇ କାର୍ଯ୍ୟ ହାସଲ କରିଥିବା ତାଙ୍କ ଜୀବନ ଚରିତରେ ଉଲ୍ଲେଖ ଅଛି । *

ମନୁଷ୍ୟ ତାର ପ୍ରତ୍ୟେକ କର୍ମ ଆତ୍ମ ସନ୍ତୋଷ ପାଇଁ କରିଥାଏ । ଆତ୍ମସନ୍ତୋଷରୁ ଶାନ୍ତିର ଜନ୍ମ ଓ ତତ୍ପରେ ଧର୍ମାନୁସନ୍ଧାନୀ ହୋଇଥାଏ । ଐତିହାସିକ ଗ୍ରନ୍ଥମାନଙ୍କ ମତରେ ବାଦଶାହ ସାହାଜାହାନ ନିଜର ପତ୍ନୀଙ୍କ ଉଦ୍ଦେଶ୍ୟରେ ଭାରତର ସର୍ବଶ୍ରେଷ୍ଠ କାରୁକାର୍ଯ୍ୟ, ମୂଲ୍ୟବାନ ପ୍ରସ୍ତର ଖଚିତ, ବୈଜ୍ଞାନିକ ପ୍ରଣାଳୀ ଦ୍ୱାରା ତାଜମହଲ ପ୍ରସ୍ତୁତ କରି ଶାନ୍ତି ପାଇପାରିଥିଲେ ।

ବ୍ୟାସକବି ହିଁ ଶାପ୍ସ୍ତ ପ୍ରଦ୍ୟୁମ୍ନ କୃଷ୍ଣାକୁମାରୀଙ୍କ ବିଚ୍ଛେଦରେ ମନର ଶାନ୍ତି ପାଇବା ପାଇଁ ଏହି କାନନ, ସର୍ବଧର୍ମ ସମନ୍ୱୟ ସ୍ତମ୍ଭ ନିଜର ପ୍ରତିମୂର୍ତ୍ତି ସ୍ମୃତି ମନ୍ଦିର, ଫଳପୁଷ୍ପ ଉଦ୍ୟାନ, ମତ୍ସ୍ୟ, ପକ୍ଷୀଙ୍କର ରକ୍ଷଣ ଓ ନିଜର ସାଧନା ପୀଠ ଏକ ଶ୍ରେଷ୍ଠ କଳାଘର, ଏହି ଏକ ଏକର ଅଶି ଡେସିମିଲ୍ ଜମି ଉପରେ ନିର୍ମାଣ ଓ ବୃକ୍ଷାଦି ରୋପଣ କରିଥିଲେ ।

ସେ ବୃକ୍ଷଗୁଡ଼ିକୁ ଏପରି ଭାବରେ ସଜ୍ଜିତ କରାଇ ରୋପଣ କରି-ଥିଲେ ତାହା ଏକ ବିଶେଷଜ୍ଞଙ୍କ ଦ୍ୱାରା ହୋଇଥାଇପାରେ ବୋଲି ଅନୁଭୂତ ହେଉଥିଲି । ସେହି କାନନରେ କେତେକ ମାଟି ନିର୍ମିତ କୁଣ୍ଡ, କେତେକ ଭୂମିରେ ପୋତା ହୋଇ, ପ୍ରତ୍ୟେକର ବ୍ୟବଧାନ ହାତେ ଦୁଇହାତ ଦୂରରେ ଗୋଲାପ ଗଛ ସଜାଇ ରଖିଥିଲେ । ଗୋଲାପ ପୁଷ୍ପକୁ ଦୁଇ ହାତରେ ସ୍ପର୍ଶ

---

* ପରିଶିଷ୍ଟ ଦ୍ରଷ୍ଟବ୍ୟ ।

* ଜୀବନ ଚରିତ ଦ୍ରଷ୍ଟବ୍ୟ ।

କରି ଗୃହଳିବା ପାଇଁ, ପଦା ଇଷ୍ଟକମାନ ବସାଇ ସୁସଜ୍ଜିତ ଭାବରେ ସ୍ଥାନ ପଥମାନ ଗୃହଆଡ଼େ ପ୍ରସ୍ତୁତ କରିଥିଲେ । ପୁଷ୍ପ, ଫଳ ବୃକ୍ଷରୋପଣ କରି ଶାନ୍ତିକାନନର ସମ୍ଭାର ବୃଦ୍ଧିରେ ସେ ପଶ୍ଚାତ୍ପଦ ନଥିଲେ । ତେଣୁ ସେ ଶାନ୍ତିକାନନକୁ ନନ୍ଦନକାନନ ବୋଲି କବିତାରେ ଲେଖିଛନ୍ତି ।

ନଜର ଉଦ୍ୟାନରୁ ଯେ ଫଳ କିମ୍ବା ପୁଷ୍ପ କାହାଦ୍ୱାରା ଅପହରଣ ନ ହୁଏ, ସେଥିପାଇଁ ସେ ସର୍ବଦା ସତର୍କ ଥିବାରୁ କେତେ ଗ୍ରାମବାସୀମାନଙ୍କ ସହ ତାଙ୍କର ପ୍ରୀତି କ୍ଷୁଣ୍ଣ ହୋଇଥିଲା । କୁଚକ୍ରୀ ଗ୍ରାମବାସୀମାନେ ତାଙ୍କର ଶାନ୍ତିରେ ଘନ ଘନ ବିଘ୍ନ ଘଟାଇଥିଲେ ।

ଜୀବନରେ ଆମ୍ଭେମାନେ ଯାହାଙ୍କର ଦୋଷ ଦେଖିଥାଉଁ ମୃତ୍ୟୁ ବେଳକୁ ସେମାନଙ୍କର ଗୁଣର ଅନୁସନ୍ଧାନ କରିଥାଉଁ । ମାତ୍ର ମାନସିକ ସମତା ନ ଆସିଲେ ଏକତ୍ର ଦୋଷ-ଗୁଣ ବାଛିବା ସମ୍ଭବ ହୋଇପାରେ ନାହିଁ । ସେତେବେଳେ ଗ୍ରାମବାସୀମାନଙ୍କର ଦୋଷ ଗୁଣ ଦେଖିବାର ସମତା ନଥିବାର ସମ୍ଭାବନା ବେଶି ଥିଲା ବୋଲି କୁହାଯିବ ।

ଗ୍ରାମବାସୀମାନଙ୍କର ଚକ୍ରାନ୍ତ, କାତର ଭାଷା ରକ୍ଷକଙ୍କୁ ଘୃଣ୍ୟ, ହୀନମନ୍ୟ ଓ ସମସ୍ତ ସୁଯୋଗ ନେଇ ତାଡ଼ନା ଦେବାର ବହୁ ଦୃଷ୍ଟାନ୍ତ ରହିଛି । ସମସ୍ତ ତାଡ଼ନା ଯାତନା ଓ ଦ୍ୱେଷର ଊର୍ଦ୍ଧ୍ୱରେ ରହି ବ୍ୟାସକବି ନଜକୁ ମଣିଷର ପରିଚୟ ଦେବାପାଇଁ ଲେଖକ, ଭାବୁକ ଭାବରେ ଲୋକଙ୍କର ହୃଦୟ ସ୍ପର୍ଶ କରିବାର ଶକ୍ତି ସଂଗ୍ରହ କରି ଲୋକଙ୍କ ଅନ୍ତର ଜୟ କରିବା ପାଇଁ ତତ୍ପର ହୋଇ-ପଡ଼ିଥିଲେ ।

ସେଥିପାଇଁ ସେ "ମୋ ଗ୍ରାମ ମଲ୍ଲିକାଶପୁର" କବିତାରେ ଲେଖିଛନ୍ତି —

*"କରନ୍ତୁ ପଛକେ ସେହି ଗ୍ରାମଲୋକେ କଳି,<br>
ନ ପାଇଲି ସଙ୍ଗସୁଖ ତାଙ୍କଠାରୁ ବଳି" ।

* "ମୋ ଗ୍ରାମ ମଲ୍ଲୀକାଶପୁର" କବିତା ।

ପୃଥିବୀର ନିରବଚ୍ଛିନ୍ନ ଗତି କାହାରି ପାଇଁ ଅପେକ୍ଷା କରେ ନାହିଁ । କିନ୍ତୁ ନିରପେକ୍ଷ ବିବେଚନା ଆସିବାକୁ ସମୟ ଲାଗେ । ଇତିହାସରେ ବିସ୍ମୃତ ହୋଇଯିବା କିମ୍ବା ଲୋକଙ୍କ ଆଗରେ ନିଜର କାର୍ଯ୍ୟକଳାପ ଏପରି ଭାବରେ ଥୋଇଦେଇଯିବା, ଯାହା ପାଇଁ ଲୋକେ ଦିନେ ଶୋକ କରିବେ, ତାହା ସେ ଭଗବତ କୃପାରୁ ପାଇପାରିଥିଲେ ।

ନିୟତିର ଇଚ୍ଛା, ବିବର୍ତ୍ତନ ଚକ୍ରରେ ଏହି ମଣିଷଗଣ ନିଶ୍ଚିହ୍ନ ହୋଇଯିବେ, ମାତ୍ର ବଞ୍ଚି ରହିବ ସେମାନଙ୍କର ସାଧନାର ଫଳ, ସେମାନଙ୍କର ଅକ୍ଷୟ କୀର୍ତ୍ତିକଳାପ ।

ସେହି ସୂତ୍ରରେ ସେନାପତିଙ୍କର ସାହିତ୍ୟ କୃତି, ଜାତି ଓ ଭାଷା ପ୍ରେମ ଓଡ଼ିଆ ଜାତିକୁ ଅନବଦ୍ୟ ଉପହାର ।

ଡେଭିଡ଼ଲିନଙ୍କ ଭାଷାରେ—"ତାକୁ ହିଁ ସଫଳ ମାନବ କୁହାଯିବ ଯିଏ ସୁଚିନ୍ତିତ ଯୋଜନା କରି ଭଲ ପୋଡ଼ଖାଇଥିବା ଇଟାରେ ମୂଳ-ପତ୍ତନ କରିଥାଏ ଅନ୍ୟମାନେ ତାହାକୁ ବାହାର କରି ତାହାରି ଉପରକୁ ଫୋପାଡ଼ନ୍ତି ।"

ଜାତି, ସାହିତ୍ୟ, ଭାଷାର ସେନାପତି ଶାନ୍ତି ପାଇଁ ଯେଉଁ କାନନ ସୃଷ୍ଟି କରିଥିଲେ, ଯେଉଁ ଶାନ୍ତିକାନନରେ ତାଙ୍କର ସାହିତ୍ୟ ସାଧନା ଓ ସାହିତ୍ୟ ହୋଇଛି ସନାତନ, ସେହି ଶାନ୍ତିକାନନର ମୂଳ ଉତ୍ପାଟନ କରି ଏ ଜାତି ତାଙ୍କ ଉପରେ ଫୋପାଡ଼ୁଛି—ଏହାହିଁ ବିସ୍ମୟ ।

ସେନାପତି ଏହି ଓଡ଼ିଆ ଜାତିକୁ ମେଘାଚ୍ଛନ୍ନ ଓଡ଼ଶାରେ ମସୀଲେଖା ଦ୍ୱାରା ଆଣି ଦେଇଛନ୍ତି ନବଜାଗରଣ । ତାଙ୍କର ଉପନ୍ୟାସ ଓ ଗଳ୍ପରେ ସେ ରଖିଯାଇଛନ୍ତି ଏକ ଐନ୍ଦ୍ରଜାଲିକ ଶକ୍ତି । ତାଙ୍କର ଲେଖନୀ ତୁଳନା ରାଜସିଂହାସନ ଆରୂଢ଼ କିମ୍ବା ଏହି ଗଣତନ୍ତ୍ର ଯୁଗର ନିର୍ବାଚନ ଦ୍ୱାରା କ୍ଷମତାସୀନ ଉଚ୍ଚପଦ ଆରୂଢ଼ ବ୍ୟକ୍ତିର ଅସି ଠାରୁ କମ୍ ତୀକ୍ଷ୍ଣ ନୁହେଁ । ତାଙ୍କର ଲେଖାମାନ ଓଡ଼ିଆ ଜାତିର ଗୋଟିଏ ଗୋଟିଏ ଦୀପ ସ୍ତମ୍ଭ ।

## ବ୍ୟାସକବିଙ୍କର ବିୟୋଗାନ୍ତେ

## ଶାନ୍ତକାନନ

ବସ୍ତୁତଃ ଉଦ୍ୟାନ ପ୍ରସ୍ତୁତିର ଯାଲ, ମାସ, ବର୍ଷର ଖୋଜ ବସିଲେ ଏହା ଗୋଟିଏ ଗୋଲକ ଧନ୍ଦା ହେବ । ଯେଉଁ କାନନ ସବୁ ଋତୁରେ ସର୍ବଦା ଗୋଲାପ ଓ ଋତୁଯୋଗ୍ୟ ବିଭିନ୍ନ ପ୍ରକାର ପୁଷ୍ପ ଓ ଫଳକୁ ପରମେଶ୍ୱର ଲୋକ ଆନନ୍ଦ ଓ ଦେବାର୍ଚ୍ଚନା ପାଇଁ ପଠାଉଥାନ୍ତି ସେହି ସବୁ ଫଳ, ସୁଗନ୍ଧି ପୁଷ୍ପ, ନାନା ଜାତିର ପକ୍ଷୀ, ମତ୍ସ୍ୟ, କେକା, କେକୀ ପୂର୍ଣ୍ଣ କାନନ, କବିଙ୍କର ମୃତ୍ୟୁ ପରେ କ୍ରମେ ମ୍ଳାନ ହେବାକୁ ଲଗିଲା ।

ଜମି, ଜମିଦାରୀ, ଗୃହ, ବାଲେଶ୍ୱରର ସ୍ଥାବରାସ୍ଥାବର ସଂପତ୍ତି, କଟକର ଗୃହ, ଗଚ୍ଛିତ ଧନ, ମୃତ୍ୟୁ ପୂର୍ବରୁ ତାଙ୍କର ଏକମାତ୍ର ପୁତ୍ର ୰ ମୋହିନୀମୋହନ ସେନାପତିଙ୍କ ହାତରେ ଯେପରି ନଯିବ ସେଥିପାଇଁ ସେ ଏକ ବଳିଷ୍ଠ ବନ୍ଦୋବସ୍ତ କରି ଦେଇ ଯାଇଥିଲେ । ଅଭିଜ୍ଞ ଦେଓ୍ୱାନ ସମ୍ପତ୍ତି ସମ୍ବନ୍ଧରେ ବେଶ୍ ସଚେତନ ଥିଲେ । ବନ୍ଦୋବସ୍ତ କରିବାର କାରଣ ସେ ବେଶ୍ ଜାଣି ପାରିଥିଲେ ଯେ ଏ ସମସ୍ତ ସମ୍ପତ୍ତି ତାଙ୍କର ଏକମାତ୍ର ପୁତ୍ରର କାମ କରିବ । ମୃତ୍ୟୁର ୪ ବର୍ଷ ପୂର୍ବରୁ ସେ ଯେଉଁ ଇଚ୍ଛାପତ୍ର କରି ଯାଇଛନ୍ତି ତାହା ପାଠ କଲେ ପାଠକମାନେ ପିତାପୁତ୍ରର ସମ୍ବନ୍ଧ ବୁଝି ପାରିବେ ।

ଯୌବନରେ ପତ୍ନୀ ବିୟୋଗ, ଦୁର୍ଭାଗ୍ୟରୁ ପୁତ୍ର ଓ ପୁତ୍ରବଧୂ ସେବାରୁ ବଞ୍ଚିତ ହୋଇ ଏକମାତ୍ର ବିଶ୍ୱସ୍ତ ଗୁମାସ୍ତା ଶ୍ରୀକଣ୍ଠ ପଟ୍ଟନାୟକ ଓ ସେବାକାରିଣୀ କେତକୀ ନାମ୍ନୀଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଥିଲେ । ଜୀବନର ଶେଷକାଳକୁ ୰ ଫକୀରମୋହନଙ୍କ ଗୁଣଗ୍ରାହୀ ବନ୍ଧୁ ଓଡ଼ିଶା ବାଲେଶ୍ୱରରେ କମ୍ ନଥିଲେ । ୰ ବ୍ୟାସକବି ମୃତ୍ୟୁର ଆଗମନ ଦେଖି ପ୍ରିୟ ବନ୍ଧୁମାନଙ୍କୁ ତାଙ୍କର ସ୍ୱ ହସ୍ତ ନିର୍ମିତ "ଶାନ୍ତକାନନ" ପରିଶେଷରେ ସ୍ଥାବରାସ୍ଥାବର ସମ୍ପତ୍ତି ମୃତ୍ୟୁ ପରେ କିପରି ରହି ପାରିବ ସେଥିପାଇଁ ବାଲେଶ୍ୱର ନିଜ ବାଲେଶ୍ୱରରୁ ବନ୍ଧୁମାନଙ୍କୁ ଡକାଇ ସେମାନଙ୍କର ପରାମର୍ଶ

ଲେଉଥିଲେ । ବ୍ରିଟିଶ ସରକାରଙ୍କର ପ୍ରଣୀତ ଆଇନରେ ଇଚ୍ଛାପତ୍ର ବିଷୟ ସେତେବେଳର * ଓକିଲ ଭୂୟାଁ ସାହେବଠାରୁ ବିଶେଷ ଭାବରେ ପରାମର୍ଶ ନେଇ ସମ୍ପତ୍ତି ରକ୍ଷଣାବେକ୍ଷଣ ପାଇଁ ନିମ ଏକ ସୁବନ୍ଦୋବସ୍ତ କରି ଯାଇଥିବାର ପ୍ରମାଣ ତାଙ୍କର ୧୯୧୪ ମସିହାରେ ସମ୍ପାଦିତ ଇଚ୍ଛାପତ୍ରରୁ ଜଣାଯାଏ ।

ସରସ୍ୱତୀ ଫକୀରମୋହନ କେବଳ ଗ୍ରାମବାସୀ ନୁହେଁ, ପୁତ୍ର, ପୁତ୍ର ବଧୂମାନଙ୍କଠାରୁ ମଧ୍ୟ ଲାଞ୍ଛିତ ହେଉଥିଲେ । ଆଭିଜାତ୍ୟର ଗରିମା ପାଇଁ ସେକଥା କୌଣସିଠାରେ ପ୍ରକାଶ କରିବାକୁ ଇଚ୍ଛା କରୁ ନଥିଲେ । ଜୀବଦ୍ଦଶାରେ ବାଲେଶ୍ୱର ମଧ୍ୟରେ ବ୍ରାହ୍ମଣମାନେ ତାଙ୍କୁ ଅହିନ୍ଦୁ ଆଖ୍ୟା ଦେବାକୁ କୁଣ୍ଠିତ ହୋଇ ନଥିଲେ । କାରଣ ମାନବଧର୍ମୀ ଫକୀରମୋହନ ଦେବାଦେବୀଙ୍କୁ ବ୍ରାହ୍ମଣଙ୍କ ସମ୍ମୁଖରେ ଭକ୍ତି ନ ଦେଖାଇ ଭଣ୍ଡ ତପସ୍ୱୀ, ଭଣ୍ଡ ବାବା ବ୍ରାହ୍ମଣମାନଙ୍କୁ ଲକ୍ଷ୍ୟ କରି ନିଜର ପଦ୍ୟାବଳୀମାନଙ୍କରେ ବହୁକଥା ଲେଖି ଯାଇଅଛନ୍ତି । ସେଥିପାଇଁ ବ୍ରାହ୍ମଣ ସମାଜ ତାଙ୍କୁ କେତେକ ଖ୍ରୀଷ୍ଟିୟାନ, ଅନ୍ୟ ଲୋକେ ବ୍ରାହ୍ମସମାଜୀ ବୋଲି ଗଣ୍ୟ କରୁଥିଲେ । ନିଜର ପିତୃମାତୃ ପିଣ୍ଡ ଦେବାପାଇଁ ବ୍ରାହ୍ମଣମାନେ ସାହାଯ୍ୟ ନ କରିବାରୁ ସେ ନିଜେ ମନ୍ତ୍ର ଉଚ୍ଚାରଣ କରି ପବିତ୍ର ହୃଦୟରେ ପିତୃପୁରୁଷଙ୍କୁ ପିଣ୍ଡଦାନ କରୁଥିବାର ପ୍ରମାଣ ରହିଛି ।

ତାଙ୍କ ପରି ଜଣେ ନୈଷ୍ଠିକ ଈଶ୍ୱରବାଦୀ ଓ ଓଡ଼ିଆ ଜାତିପ୍ରେମୀ ଲୋକର ଅବସ୍ଥା ଏହି ଚିନ୍ତା ମାନ୍ଦ୍ୟଗ୍ରସ୍ତ, ବ୍ରାହ୍ମଣ, ଗ୍ରାମବାସୀ ଇଂରେଜ ସରକାର-ପୁଚ୍ଛଧାରୀ, ପଡ଼ୋଶୀ ପ୍ରଦେଶରୁ ଆସିଥିବା ବେତନଭୋଗୀ ଓ ଓଡ଼ିଶାରେ ଜମିଦାରୀ ଭୋଗ କରୁଥିବା ଭିନ୍ନଭାଷୀ ଲୋକମାନଙ୍କଠାରୁ କିପରି ନିର୍ଯ୍ୟାତିତ ହୋଇଥିଲେ ତାହା ସେ ନିଜ ଜୀବନଚରିତ ଓ ପଦ୍ୟାବଳୀରେ ପରିସ୍ଫୁଟ କରି ଦେଖାଇ ଯାଇଛନ୍ତି ।

ଜୀବନଚରିତ ବିଷୟ ଉଲ୍ଲେଖ କଲାବେଳେ ଏଠାରେ ଏତିକି ସୂଚାଇ ଦେବା ବିଧେୟ ଯେ ତାଙ୍କର ଜୀବନଚରିତରୁ ଓ "ପ୍ରାୟଶ୍ଚିତ" ଉପନ୍ୟାସରୁ କେତେକ ବିଷୟ ତାଙ୍କର ପୁତ୍ର ବାଦ୍

* ଗଡ଼ପଦା ଭୂୟାଁଙ୍କର କୋଠା ଯେ ଓକିଲ କରିଥିଲେ ଯାହା ବର୍ତ୍ତମାନ ବାଣିଜ୍ୟଶ୍ରେଣୀ ହେଉଛି—ତାହା ଫକୀରମୋହନଙ୍କ ଗୃହଠାରୁ ଅଳ୍ପ ଦୂରରେ ।

ଦେଇଥିବାର ଏବେ ବହୁ ଗବେଷକ ତାଙ୍କର ଲେଖାରେ ଦର୍ଶାଇଛନ୍ତି * ତାହା ଯଥାର୍ଥ ।

ମନୁଷ୍ୟର କାମନା ଅନନ୍ତ । ବିଶେଷତଃ ଜୀବଦ୍ଦଶାରେ ଯେପରି ଅବଶେଷ ମୃତ୍ୟୁ ପରେ କିପରି ନିଜର ବଂଶର ଓ ଦେଶର ନାମ ରହିବ ତାହା ଜୀବନକାଳ ତୁଳନାରେ ମୃତ୍ୟୁ ପୂର୍ବରୁ ମଧ୍ୟ ପ୍ରତ୍ୟେକର ବଳବତ୍ତର ରହିଥାଏ । ଏହି ଗୋପନ ସତ୍ତା ମନୁଷ୍ୟର ଅବଚେତନ ମନରେ ମଧ୍ୟ କାର୍ଯ୍ୟକାରୀ ହେଉଥାଏ । ଔପନ୍ୟାସିକ ଫକୀରମୋହନ ସେଥିରୁ ମଧ୍ୟ ବାଦ୍ ପଡ଼ି ନଥିଲେ । ମୃତ୍ୟୁ ପୂର୍ବରୁ ଶାନ୍ତିକାନନର ରକ୍ଷଣାବେକ୍ଷଣ ପାଇଁ ତାଙ୍କର ଅବଚେତନ ମନ ତାଙ୍କୁ ବିଚଳିତ କରିଥିଲା । ଉତ୍କଳ ଓ ବନ୍ଧୁମାନଙ୍କ ପରାମର୍ଶରେ ୧୯୧୭ ମସିହାରେ ଏହି ଶାନ୍ତିକାନନର ରକ୍ଷଣାବେକ୍ଷଣ ନିମନ୍ତେ ଗୋଟିଏ ଟ୍ରଷ୍ଟି ବୋର୍ଡ଼ ଗଠନ କରି ସେହି ବର୍ଷ ବାଲେଶ୍ୱରରେ ସମବାୟ ବ୍ୟାଙ୍କ ଖୋଲିବାରୁ ସେଥିରେ ଆଠ ହଜାର ଟଙ୍କା ରଖି ଯାଇଥିଲେ । ତାର ସୁଧରେ ଶାନ୍ତିକାନନ ସେ କାଳରେ ସୁରୁଖୁରୁ ରୂପେ ପରିଚାଳିତ ହୋଇପାରିଥାଆନ୍ତା । ଟ୍ରଷ୍ଟ ବୋର୍ଡ଼ରେ ଯେଉଁମାନେ ସଭ୍ୟ ଥିଲେ ସେମାନେ ହେଲେ ୰ ଗୋଲବ ଖାଁ, ୰ ଉପେନ୍ଦ୍ର ଚନ୍ଦ୍ର ଗୁପ୍ତ, ୰ କାଳନ୍ଦୀ ନାୟକ, ୰ ଅଭିରାମ ନନ୍ଦ, ୰ ପ୍ରଫୁଲ୍ଲ ପଟ୍ଟନାୟକ, ମଧୁସୂଦନ ଦାସ, ଗୋବିନ୍ଦ ଚନ୍ଦ୍ର ପଣ୍ଡା, ହରନପ୍ରଭା ସେନାପତି, ୰ ପୂର୍ଣ୍ଣଚନ୍ଦ୍ର ଦାସଙ୍କ ଗହଣରେ ଅନ୍ୟ କେତେକ ସଭ୍ୟ ଥିଲେ ।

ଗୁଆସ୍ତା ଶ୍ରୀକଣ୍ଠ ପଟ୍ଟନାୟକ ଭକ୍ତ ଥାଇ ଭକ୍ତିପ୍ଲୁତ ହୃଦୟରେ ଜଣେ ମାଳୀ ସହ ଶାନ୍ତିକାନନକୁ କିଛିବର୍ଷ ଚଳାଇ ନେଇଥିଲେ ।

---

* ଦୁଃଖର କଥା ଏହି କୋ-ଅପରେଟିଭ ବ୍ୟାଙ୍କ ୧୯୧୭ ମସିହାରୁ ବାଲେଶ୍ୱରରୁ ଆରମ୍ଭ ହୋଇଥିଲେ ମଧ୍ୟ କର୍ମୀ ଅଫିସରମାନେ ତାର ମୂଳ ଖାତାଟି ବାହାର କରି ଦେବାକୁ ପ୍ରତ୍ୟାଖ୍ୟାନ କଲେ । ଏପରିକି ଟ୍ରଷ୍ଟବୋର୍ଡ଼ ଗଠନ ଓ ଟଙ୍କା ଜମା ହେବା କଥା ସତ୍ୟ । ୰ ଗୋବିନ୍ଦ ଚନ୍ଦ୍ର ପଣ୍ଡା ଟ୍ରଷ୍ଟ ବୋର୍ଡ଼ର ସଭ୍ୟ ଥାଇ ଏକଥା କହି ଯାଇଛନ୍ତି । ଶ୍ରୀ ଚିନ୍ତାମଣି ଦାସ, ଗୌରମୋହନ ମହାନ୍ତି ଶତାୟୁ ହେବାକୁ ଲେଖିଲେ ତାହା ପ୍ରକାଶ କରିଛନ୍ତି ।

"ଫକୀରମୋହନ ସମୀକ୍ଷା"

କେତକୀ, କବିଙ୍କର ମୃତ୍ୟୁ ପରେ କବିଙ୍କ ଧନ ଖଣ୍ଡେ ସ୍ଥାନ, ଗୃହଟିଏ କବିଙ୍କ ଜୀବିତାବସ୍ଥାରେ ପାଇଥିଲେ। ୧୯୦୦ ରେ ଦୁଇବର୍ଷ ବୟସ୍କା ସେ କରି ସ୍ୱାଧୀନ ଭାବରେ କିଛି ବ୍ୟବସାୟ କରି ଚଳି ଆସୁଥିବା ଅବସ୍ଥାରେ ନିଃସନ୍ତାନ ବୈଧବ୍ୟରସ ଭାବରେ ମାରିଯାଆନ୍ତି ।

କେତକୀ ନାମ୍ନୀ କଦାପି ଚମ୍ପା ଚରିତ୍ରରେ ଉପନୀତ ହୋଇ ନ ପାରନ୍ତି । କେତେକ ଖ୍ୟାତ ସାହିତ୍ୟ ବନ୍ଧୁଙ୍କର ଏହି କଳ୍ପନା ଭ୍ରମ ହେବ ଯେ—କେତକୀ ଚମ୍ପାର ଚରିତ୍ର ଫକୀରମୋହନଙ୍କ ଉପନ୍ୟାସରେ—ତାହା ଠିକ୍ ନୁହେଁ ।

* ୯ ବ୍ୟାସକବିଙ୍କର ସମ୍ପତ୍ତିମାନ ତାଙ୍କର ଏକମାତ୍ର ପୁତ୍ର ପ୍ରଫେସର ଅଫ୍ ଫିଲୋସଫିଙ୍କ ବର୍ତ୍ତିବାର କଥା । ମାତ୍ର ସେଥିରେ ପ୍ରତିବନ୍ଧକ ଥିଲି ସେନାପତିଙ୍କର ଇଚ୍ଛାପତ୍ର ।

ବାଲେଶ୍ୱରରେ ଜଜ୍‌ସିପ୍ ନଥିବାରୁ କଟକରେ ୯ ମୋହିନୀବାବୁ ପିତାଙ୍କ ଉଇଲରେ ବର୍ଣ୍ଣିତ ଥିବା ବିଷୟମାନ ଏକ ପାଗଳର ପ୍ରଳାପ ବୋଲି ପ୍ରମାଣ କରିଥିଲେ ଏକ ତରଫା ଡିକ୍ରିର ମକଦ୍ଦମାରେ । ଶାନ୍ତିକାନନ ପାଇଁ ଜମା ଥିବା ଟଙ୍କା ନେବାରେ ବାଧାପ୍ରାପ୍ତ ହେବାର ଜାଣି ସମସ୍ତ ଟ୍ରଷ୍ଟିଙ୍କ ଉପରେ ଯେଉଁ ମକଦ୍ଦମା କରିଥିଲେ ସେଥିରେ କୌଣସି ଭଦ୍ର ବ୍ୟକ୍ତି କଟକ ପର୍ଯ୍ୟନ୍ତ ଯାଇ ଜବାବ ଦେଇ ନଥିଲେ । କବିଙ୍କର ଜୀବିତାବସ୍ଥାରେ ତାଙ୍କ ପୁତ୍ର ପିତାଙ୍କ ଉପରେ ମକଦ୍ଦମା କରି ଚଳିଥିଲେ ବୋଲି ସେମାନେ ଦେଖି ଆସୁଥିଲେ । ସେଥିପାଇଁ ସେନାପତି ଚକ୍ଷୁରୁ ଝରନ୍ତି ଲୋତକ ଗଡ଼ାଇ କହି ଯାଇଛନ୍ତି ଯେ, ଈଶ୍ୱର କାହାରିକୁ ଏପରି ପୁତ୍ର ନଦେଉ, ପୁଣି ଏକମାତ୍ର ପୁତ୍ର ପିତାର ଶତ୍ରୁ ହେବାଠାରୁ ପୁତ୍ରର ପିତା ନହେବା ଭଲ ।

ସ୍ୱାର୍ଥାନ୍ୱେଷୀ ପିତୃବାକ୍ୟ ଲଙ୍ଘନକାରୀ ସନ୍ତାନ ଯେତେବେଳେ ମାତୃଭ୍ରଷ୍ଟ ହୋଇ ସ୍ୱଇଚ୍ଛାରେ ଦାର ଗ୍ରହଣ କରେ—ସେତେବେଳେ ସେ

---

* ୧୯୮୩ ମହିଳା ଜାନୁୟାରୀ ସଂଖ୍ୟା 'ବାର୍ଦ୍ଧକ୍ୟ'—ସନ୍ନ୍ୟାସିନୀ ଲେଖାରେ ସୁରତରଙ୍ଗିଣୀ ଦ୍ରଷ୍ଟବ୍ୟ ।

ଟେର୍ନିଠାରେ ହୋଇଥାଏ ଦାସ । ଦାସତ୍ୱ ବରଣ କରି କେହି ପିତୃ ମାତୃ ମର୍ଯ୍ୟାଦା କିମ୍ବା ବଂଶର ସମ୍ମାନ ଅକ୍ଷୁର୍ଣ୍ଣ ରଖି ପାରେନାହିଁ । ସେ ପୁତ୍ର କୁହୁକମୟ ମନ୍ତ୍ରରେ ପେଡ଼ି ଜଳ ଭସ୍ମ ହୋଇଯାଏ । ବିଶେଷ ଭାବରେ ଦୈନ୍ୟଗ୍ରସ୍ତୀ ନାସ୍ତିଠାରେ ନିଜର ସାଂସ୍କୃତିକ ଜୀବନ ବଳି ଦେଇ ତାର ସୁଖ ସ୍ୱାଚ୍ଛନ୍ଦ୍ୟ ଦେଖିବା ପାଇଁ ପୁରୁଷର ସମସ୍ତ ଧର୍ମିକ ନାସ୍ତି ଦେଉଥିଲେ ବିସର୍ଜନ କରିବାକୁ ପଡ଼ିଥାଏ । ଇଚ୍ଛା ବିବାହ—ଜଣେ ଏକ ବଙ୍ଗୀୟ ଲଳନା ଓ ବ୍ରାହ୍ମଧର୍ମାବଲମ୍ବୀଠାରେ ଦର୍ଶନ ଅଧ୍ୟାପକଙ୍କର ସେହି ଦଶା ହୋଇଥିଲା । କବିଙ୍କର ଶେଷ ଇଚ୍ଛା ଥିଲା ଯେପରି ସେ ମୃତ୍ୟୁ ବେଳକୁ ପୁତ୍ରର ମୁଖ ଦର୍ଶନ ନ କରନ୍ତୁ ।

ଶ୍ରୀକଣ୍ଠ ପଟ୍ଟନାୟକ ତାଙ୍କର ପୁତ୍ର ସହ ସମସ୍ତ କାଗଜପତ୍ର, ଆୟ ବ୍ୟୟ ପ୍ରଭୃତିଙ୍କର ନିର୍ଦ୍ଦେଶମତେ କବିଙ୍କର ଶୁତ୍ର ଓ ପୁତ୍ରବଧୂଙ୍କୁ ବୁଝାଇ ଦେଇ ସ୍ୱଗ୍ରାମକୁ ବାହୁଡ଼ି ଯାଇଥିଲେ । ଅର୍ଥଲୋଭୀ ପୁତ୍ର ଏ ଜାତିର ଜ୍ୱଳନ୍ତ ପ୍ରତିମାକୁ ମଧ୍ୟ ନିର୍ଯ୍ୟାତିତ କରିବାକୁ ଛାଡ଼ି ନାହାନ୍ତି । ସେହି ଶାନ୍ତିକାନନକୁ ଏକ ଯବନ ହସ୍ତରେ ସମର୍ପଣ କରି ସେଥିରେ ରକ୍ଷଣାବେକ୍ଷଣ ଓ ଫଳ ଆଦାୟ କରି ସେଥିରୁ ମିଳିଥିବା ଧନ ପାଇଁ ସେ ଯବନ ନିକଟରେ ଏକ ମୌଖିକ ଚୁକ୍ତି କରିଥିଲେ ବୋଲି ପରେ ଜଣା ପଡ଼ିଲା ।

ଏହି କାନନର ଉତ୍ତରକୁ ଏକ ଯବନ ବସ୍ତି ଅବସ୍ଥିତ । ଯେଉଁ ବ୍ୟକ୍ତି ଏହି ପ୍ରଫେସର ଅଫ୍ ଫିଲୋସଫିଙ୍କଠାରୁ କାନନ ନେଇ ଥିଲା, ତାର କାର୍ଯ୍ୟ ଛାଗଳ ମାଂସ ବିକ୍ରୟ କରିବା । ଫକୀରମୋହନଙ୍କ ପ୍ରତିମୂର୍ତ୍ତିଟିର ବେକରେ ମୃତ ଛାଗଳର ପାଦ ଦୁଇଟିକୁ ଝୁଲାଇ ମନ୍ଦିର ମଧ୍ୟରେ ବସି ଚର୍ମ ନିଷ୍କ୍ରାମଣ କରି ଆରାମରେ ସେ ଯେ କେତେଦିନ ଭୋଗ କରିଛି ତାହା କୁହାଯାଇ ପାରିବ ନାହିଁ । ସେହି ଯବନ ଏବେ ମଧ୍ୟ ଜୀବିତ ।

୧୯୨୮ ମସିହା ବେଳକୁ 'ଶାନ୍ତିକାନନ' ଏକ ଅରଣ୍ୟରେ ପରିଣତ ହୋଇ ସାରିଥାଏ । ସରୀସୃପ, ଶୃଗାଳ ଓ ବାଟୋଇ ତଥା ଶିକ୍ଷା ସ୍ୱଳ୍ପତା ଗ୍ରାମବାସୀମାନଙ୍କର ବିଷ୍ଠା ତ୍ୟାଗର ସ୍ଥାନ ହୋଇଥିଲା ।

ଏହିପରିକ ବିବାଳୋକରେ ସେହି ସ୍ଥାନ ବାଟୋଇଙ୍କ ମନରେ ଭୟ ସଞ୍ଚାର କରୁଥିଲା । ୧୯୩୦ ମସିହା କିମ୍ବା ୧୯୩୧ ମସିହାରେ ସେନାପତିଙ୍କର ବାହଗୁହ କଂଗ୍ରେସ ସେବାଦଳମାନଙ୍କର ଅଶ୍ରୁପୂର୍ଣ୍ଣ ହୋଇଥିଲା । ବହୁ ଦେଶସେବକ ଖ୍ୟାତନାମା ଲୋକ ଅରଣ୍ୟରେ ପରିଣତ ହୋଇଥିବା ଶାନ୍ତିକାନନର ପାର୍ଶ୍ୱ ପଥରେ ଯାତାୟାତ ଯେ କରିଛନ୍ତି ତାହା ସମସ୍ତ ବାଲେଶ୍ୱରବାସୀଙ୍କୁ ଜଣା ।

ଯେଉଁଦିନ ଏହି ଶାନ୍ତିକାନନ ଏକ ନିଦର୍ଶନ ନାମରେ କ୍ରନ୍ଦନ କରୁଥାଏ । ତାହା କୌଣସି ଦେଶପ୍ରେମୀ, ଶିକ୍ଷିତ ବାଲେଶ୍ୱରବାସୀ କିମ୍ବା ସାହିତ୍ୟିକ ଆସି ଥରେ ହେଲେ ମାତ୍ର ଆଶ୍ୱାସନା ବାଣୀ ଶୁଣାଇବାର ପ୍ରୟାସ କରୁନଥିଲେ ।

ଏ ଜାତି ସେତେବେଳେ ନିଜର ପ୍ରଦେଶ ଦାବି କରି ଯାଉଥାଏ, ଜାତିପ୍ରେମୀ ମୁଷ୍ଟିମେୟ ବାଲେଶ୍ୱରବାସୀ ଓଡ଼ିଆଙ୍କୁ ସ୍ମର୍ଣ୍ଣ କଲେଣି । ଉତ୍କଳ ଗୌରବଙ୍କ ସହିତ ବହୁ ଜମିଦାର, ଡାକ୍ତର, ଶିକ୍ଷକ ଆଗଭର ହୋଇ କାଉନ୍ସିଲକୁ ନିଜ ନିଜ ପ୍ରତିନିଧି ପ୍ରେରଣ କରିବାରେ ବ୍ୟସ୍ତ ଥିଲେ । ୧୯୩୯ରୁ ୧୯୩୪ ମସିହା ପର୍ଯ୍ୟନ୍ତ ଭାରତର ରାଜ୍ୟ ନିର୍ବାଚନର ଯୋଗ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସେତେବେଳେ ଥିଲା ଯୁବକମାନଙ୍କ ସ୍ନାୟୁ ଅଦେଖା ଅଭିମାନ ସ୍ୱଦେଶ ପ୍ରେମ ମନ୍ତ୍ରର ଘନଘଟାରେ ଏକ ମ୍ରିୟମାଣ ଅବସ୍ଥା । ସେ ଯୋଗ ଥିଲା ଗାନ୍ଧୀଙ୍କର ନେତୃତ୍ୱରେ ଭାରତବାସୀଙ୍କର ଇଂରେଜମାନଙ୍କୁ ଏ ଦେଶରୁ ବିଦାୟ ଦେବାର ଚରମ ଡାକ । ଦେଶପ୍ରେମୀ ନେତାମାନେ କେତେକ ଜେଲଖାନାରେ କଏଦୀ ହୋଇ ରହିଥିଲେ । ତତ୍ ସଙ୍ଗେ ସଙ୍ଗେ ମତ ଓ କ୍ଷମତାର ମଧ୍ୟ କଳହ ଲାଗି ରହିଥାଏ ନେତୃବୃନ୍ଦଙ୍କ ମଧ୍ୟରେ । ତାପରେ ୧୯୪୨-୪୩ରେ ବାଲେଶ୍ୱର ଉତ୍ତରାଞ୍ଚଳ ବାତ୍ୟା ଓ ବନ୍ୟାର କବଳଗ୍ରାସ ଯୋଗକୁ ଦୁର୍ଭିକ୍ଷ ଓ ମହାମାରୀରେ ପୀଡ଼ିତ ହୋଇଥିଲା । ଓଡ଼ିଶାର ପ୍ରଥମ କରି ଖାଦ୍ୟ ବସ୍ତ୍ର ନିୟନ୍ତ୍ରଣ ଯୋଗକୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା ଲାଗିଥାଏ । ଭାରତର ଜନନାୟକ, ପ୍ରଦେଶର ଦେଶସେବୀ, ଦେଶପ୍ରେମୀ, ତରୁଣ ଓ ବୃଦ୍ଧମାନେ ଉପଦେଶୀ

କାରାଗାରରେ ବନ୍ଦୀ । ଜାତିର ପିତା ମହାତ୍ମା ଗାନ୍ଧୀଙ୍କର "କର ବା ମର" ଡାକ, ବହିର୍ଭାଗରୁ ନେତାଜୀ ସୁଭାଷ ଚନ୍ଦ୍ରଙ୍କର ରଣ ହୁଙ୍କାର ଦ୍ୱାରା ଦେଶପ୍ରେମୀମାନେ ଭାରତରୁ ବ୍ରିଟିଶବାହିନୀଙ୍କୁ ଘଉଡ଼ାଇବା ପାଇଁ ଆପ୍ରାଣ ଚେଷ୍ଟା କରୁଥିଲେ ।

ବାଲେଶ୍ୱର ସହରର ଅଦୂରେ ଗୋଳାବାରୁଦ ପରୀକ୍ଷାଗାର ଚାନ୍ଦିପୁରଠାରେ ଅବସ୍ଥିତ । ବାଲେଶ୍ୱରଠାରୁ ପଇଁତିରିଶ ମାଇଲ ଦୂରରେ ଉତ୍ତରକୁ ଅମର୍ଦାରୋଡ଼ଠାରେ ବ୍ୟୋମଯାନର ଅବତରଣ କେନ୍ଦ୍ର ଓ ବ୍ରିଟିଶ ଜାତିର ଯୁଦ୍ଧ ପ୍ରସ୍ତୁତି ପାଇଁ ଏକ ବିରାଟ ରଣ ଶିବିର । ସେଠାରୁ ଶହ ଶହ ସଂଖ୍ୟାରେ ଗୋରା ସୈନିକମାନେ ନିଜର ଆମୋଦ ପ୍ରମୋଦ ପାଇଁ ଜିପ୍‌ଗାଡ଼ି ଧରି କମ୍ବା ରେଲ ଯୋଗେ ବାହାରି ଆସନ୍ତି ଏହି ସହରକୁ । ନିଜର କାମ ଚରିତାର୍ଥ ସାଙ୍ଗକୁ ନିଜ ଜାତିର ଗରିମା ଦେଖାଇ ପ୍ରଭୁତ୍ୱ ଜାହିର କରିବା ପାଇଁ ଗୁରିଆଡ଼େ ଏଣେତେଣେ ମନ ଖୁସିରେ ଭ୍ରମଣ କରି ବୁଲୁଥାନ୍ତି ।

ସେଦିନ ଥିଲା ଗାନ୍ଧୀ, ସୁଭାଷଙ୍କର ଯୁଗ । ଦେଶର ନେତାଙ୍କର ନେତୃତ୍ୱ ପାଇ କଠୋର ସତ୍ୟର ରଶ୍ମିକୁ ପ୍ରକଟ କରି ଶିଖି ସାରିଲେଣି ଭାରତବାସୀ—ଏ କଥା ଦରିଆ ପାରର ହାଂଗୁ ଲୋକମାନଙ୍କୁ ଜଣାଯିବ କପରି ? ଏହିତ ଅବସ୍ଥା ସେ ବେଳର ।



# ସର୍ବ ଧର୍ମ ସମନ୍ୱୟ ସ୍ତମ୍ଭରୁ ଅଜନ୍ତା ପ୍ରତିମୂର୍ତ୍ତି ଫଳକ ଅପହରଣ

ମାନବଧର୍ମୀ ✓ ଫକୀରମୋହନଙ୍କର ଦାର୍ଶନିକ ତତ୍ତ୍ୱ ବିଷୟ ଅନୁସନ୍ଧାନ କରିବାର ସୁଯୋଗ ଏଠାରେ ଲିପିବଦ୍ଧ ନକରି କେବଳ ଏତିକି ମାତ୍ର କହି ରଖିଲେ ଠିକ୍ ହେବ ଯେ ତାଙ୍କର ରଚିତ ପଦ୍ୟାବଳୀର ବହୁ ସ୍ଥାନରେ ଦାର୍ଶନିକ ଭାବଧାରାମାନ ପୂରି ରହିଛି। ତାଙ୍କର ଲିଖିତ ଉପନିଷଦ ଓ ଅଦ୍ୱୈତ ବେଦାନ୍ତ ସାଙ୍ଗକୁ ସ୍ୱହସ୍ତ ନିର୍ମିତ ସର୍ବଧର୍ମ ସମନ୍ୱୟ ସ୍ତମ୍ଭରେ ସେ ଯେଉଁ ମହାପୁରୁଷମାନଙ୍କ ଫଳକ ରଖି ସେମାନଙ୍କର (ଉର୍କଠନସ୍) ଉପଦେଶମାନ ଲେଖି ଦେଇ ଯାଇଛନ୍ତି ତାହା ଦେଖିଲେ ନାସ୍ତିକବାଦୀ ଓ ଆସ୍ତିକବାଦୀ ଉଭୟେ ତାଙ୍କୁ ନଜର କରିନେବେ।

ସେ ଉତ୍କଳର ବିରାଜମାନ ଶ୍ରୀ ଶ୍ରୀ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା କିମ୍ବା ଶିବଙ୍କୁ ଫଳକରେ ସ୍ଥାନ ନଦେଇ ମହମ୍ମଦ, ଯୀଶୁ, ଜଗନ୍ନାଥ ଦାସ, ଚୈତନ୍ୟ ଇତ୍ୟାଦିଙ୍କୁ ସ୍ଥାନ ଦେଇଛନ୍ତି। ସର୍ବଧର୍ମ ସମନ୍ୱୟ ସ୍ତମ୍ଭରେ ଯେଉଁ ପ୍ରତିମୂର୍ତ୍ତିମାନ ଖୋଦିତ କରି ରଖିଯାଇଛନ୍ତି ତାହା—

(୧) ଅଜନ୍ତା ମୂର୍ତ୍ତି ଖୋଦିତ କରି ତାଙ୍କ ତଳେ ଯେଉଁ ଉପଦେଶାବଳୀ ଲେଖା ହୋଇଛି—ଧର୍ମଂ ମେ ଶରଣଂ, ବୁଦ୍ଧ ମେ ଶରଣଂ ଓ ସଙ୍ଘ ମେ ଶରଣଂ।

(୨) ଶ୍ରୀ ଶ୍ରୀ ଚୈତନ୍ୟ ଦେବଙ୍କର ମୂର୍ତ୍ତି ଓ ତଳେ ବାଣୀ ବାଣୀ—"ଜୀବେ ଦୟା, ନାମେ ରୁଚି।"

"ପରିତ୍ରାଣାୟ ସାଧୂନାଂ, ବିନାଶାୟ ଚ ଦୁଷ୍କୃତାମ୍।
ଧର୍ମ ସଂସ୍ଥାପନାର୍ଥାୟ, ସମ୍ଭବାମି ଯୁଗେ ଯୁଗେ॥"

(୩) ଶ୍ରୀ ଶ୍ରୀ ଜଗନ୍ନାଥ ଦାସଙ୍କ ପ୍ରତିକୃତି ତଳେ ଏହି ବାଣୀ ଲେଖାଅଛି—

"ଅନନ୍ତ ବ୍ରହ୍ମ ନିରାକାର, ବିଶ୍ୱ ବ୍ରହ୍ମାଣ୍ଡ ମୂଳାଧାର।
ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ତୋ ଲୋମକୂପେ ବିରାଜଇ॥"

(୪) ବୁଦ୍ଧଙ୍କର ପ୍ରତିକୃତି ତଳେ ଯେଉଁ ବାଣୀ ଲେଖାଅଛି ତାହା ହେଲା— ମାଂ ହିଂସା ସର୍ବଭୂତାନ

"ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍‌ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ।"

(୫) "ଓଁ ତତ୍ ସତ୍ ଓଁ ଏକମେବାଦ୍ୱିତୀୟଂ ।" ରାଜା ରାମମୋହନ ରାୟଙ୍କ ପ୍ରତିକୃତି ତଳେ ଏହି ବାଣୀ ଲିଖିତ ହୋଇଛି ।

(୬) ଯିଶୁଖ୍ରୀଷ୍ଟଙ୍କ ପ୍ରତିକୃତି ତଳେ ମଧ୍ୟ ବାଣୀ ଲେଖାଅଛି—

ପରମେଶ୍ୱରଙ୍କୁ ପ୍ରାର୍ଥନା କର
ପ୍ରତିବେଶୀଙ୍କୁ ପ୍ରେମ କର ।

(୭) "ସୋଽହଂ" ଏହି ବାଣୀଟି ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ପ୍ରତିକୃତି ତଳେ ଲିଖିତ ।

(୮) ହଜରତ୍ ମହମ୍ମଦଙ୍କର ପ୍ରତିକୃତି ନିମ୍ନରେ କୌଣସି ପ୍ରକାର ବାଣୀ ଲିଖିତ ହୋଇନାହିଁ ।

(୯) ସେହିପରି ଗୁରୁନାନକଙ୍କ ପ୍ରତିକୃତିରେ କୌଣସି ପ୍ରକାର ବାଣୀ ଲିଖିତ ହୋଇନାହିଁ ।

ଏହି ସ୍ମୃତି ଏବେ ମଧ୍ୟ ସୁରକ୍ଷିତ । ମାତ୍ର କର୍ମକର୍ତ୍ତାଙ୍କ ରୁଚି ଉପରେ ବିଭିନ୍ନ ବର୍ଷରେ ବିଭିନ୍ନ ରଙ୍ଗ କରାଯାଏ । ତାଙ୍କ ସ୍ୱ ହସ୍ତ ନିର୍ମିତ ନିଜର ପ୍ରତିକୃତିକୁ ମଧ୍ୟ କେତେବେଳେ ଯୁବକ କେତେବେଳେ ବୃଦ୍ଧ କରି ରଙ୍ଗ କରାଯାଇଥାଏ ।

ବର୍ତ୍ତମାନ ସେଠାରେ ଅଜନ୍ତା ଫଳକଟି ନାହିଁ, ଅଛି କେବଳ ବାଣୀ । ୧୯୪୪ ମସିହା ବିଷୟ ପୂର୍ବରୁ କିଛି ସୂଚନା ମାତ୍ର ଦିଆଯାଇଅଛି ।

ଓଡ଼ିଶାରେ ସର୍ବ ପ୍ରଥମେ ହାଇକୋର୍ଟ ଓ ମେଡିକାଲ୍ ପ୍ରବେଶ କଲାବେଳେ ଓଡ଼ିଆଙ୍କ ଦ୍ୱାରା ବାଧାପ୍ରାପ୍ତ ହୋଇ ନଥିବା ଯୁଗର ଅବସାନ ସେତେବେଳେ ଘଟି ସାରିଛି । ଗାନ୍ଧୀ, ଜବାହରଲାଲ ଯୁଗରେ ମାଟି

ରାସ୍ତା, ପଣ୍ଡିତ ପଡ଼ିଆରେ ବେଲଫେଗ କରୁଥିବା ବାଲେଶ୍ୱର ସହରାଞ୍ଚଳ ଲୋକଙ୍କର ମନର ସାହସ କମ୍ ନଥିଲା। ଜଣେ ଯୁବକ ଏହା ଗ୍ରାମବାସୀଙ୍କଠାରୁ ଶୁଣିବାକ୍ଷଣି ତାଙ୍କୁ ବାଧା ଦେବାପାଇଁ ସେହି କଣ୍ଟକାକୀର୍ଣ୍ଣ, ହିଂସ୍ରପଶୁପୂର୍ଣ୍ଣ, ସରୀସୃପପୂର୍ଣ୍ଣ ବନସ୍ଥଳୀ ମଧ୍ୟରେ ପ୍ରବେଶ କଲା। * ଗୋରା ସୈନିକଦ୍ୱୟ ସେତେବେଳେ କଣ୍ଟ ଫଳ ସଂଗ୍ରହ କରିସାରି ବେଗିରୁ "ଅଜନ୍ତା" ଫଳକଟିକୁ ଲୁହା ଛେଣୀ ଭଳି ଏକ ଅସ୍ତ୍ର ବ୍ୟବହାର କରି ବାହାର କରି ସାରିଥିଲେ। ତାଙ୍କୁ ଅନୁନୟ କରିବାରେ ସେମାନେ ବୁଦ୍ଧଙ୍କର ଫଳକଟିକୁ ବାହାର କରିବାରୁ କ୍ଷାନ୍ତ ହୋଇଥିଲେ। ସେହିଦିନଠାରୁ କବି କଳ୍ପନାର ଫଳକଟି ଅପହରଣ ହୋଇ ଯାଇଛି। ଶାନ୍ତକାନନ ପୁନରୁଦ୍ଧାର ଆସ୍ଫାଳନକାରୀମାନେ ଅନ୍ୟ ଗୋଟିଏ ଫଳକ ପ୍ରସ୍ତୁତ କରି ପୁନସ୍ଥାପନ ସୌଭାଗ୍ୟର ଅଧିକାରୀ ଆଜି ପର୍ଯ୍ୟନ୍ତ ହୋଇପାରି ନାହାନ୍ତି।

## ଓଁ ଦ୍ୱିତୀୟ ସ୍ତ୍ରୀ କୃଷ୍ଣାକୁମାରୀଙ୍କ ସମାଧି

ପିତା ପୁତ୍ରର କଳହ, ନ୍ୟାୟାଳୟରେ ଉପସ୍ଥିତ ବିଷୟ ଚୁମ୍ବକରେ ବର୍ଣ୍ଣନା କରା ହୋଇଛି। ତାର ସତ୍ୟତା ବିଷୟରେ କାଗଜପତ୍ର ପେଶ କରି ନ ପାରିଲେ ମଧ୍ୟ ୧୯-୬-୧୯୧୪ ମସିହାରେ ( ଉଣେଇଶ ଶହ ଚଉଦ ମସିହା ଜୁନ୍ ମାସ ଉଣେଇଶ ତାରିଖରେ ) ଯେଉଁ ଇସ୍ତାପତ୍ର ୬ ବ୍ୟାସକବି ସମ୍ପାଦନ କରିଥିଲେ ତାହା ପୁନର୍ବାର ଏଠାରେ ପ୍ରକାଶ କରାଗଲା। * ଏହା ପାଠ କଲେ ପାଠକେ ନିଜ ବୁଦ୍ଧିରୁ ବେଶ୍ ବୁଝି ପାରିବେ।

ଏହାର ସମ୍ପାଦକ ବହୁବର୍ଷ ଚେଷ୍ଟା ଦ୍ୱାରା ପାଇ "ବାର୍ତ୍ତା"ରେ ପ୍ରକାଶ କରି ସାରିବା ପରେ ସମ୍ପାଦକର ନିନ୍ଦୁକମାନେ ଏହାର ସତ୍ୟତା ବିଷୟରେ ସନ୍ଦିହାନ ହୋଇଥିଲେ ଏବଂ ତାଙ୍କୁ ବହୁପ୍ରକାର ତାଚ୍ଛଲ୍ୟ କରି ସମାଲୋଚନା କରିଥିଲେ। ତେଣୁ ଏହାର ସତ୍ୟତା ବିଷୟ ବାଲେଶ୍ୱର ସବ୍‌ରେଜେଷ୍ଟ୍ରୀ ଅଫିସରେ ଥିବା **Bk. No. III Vol 1. Page 27 to 29 and Opening No. 2 for the year 1927**ରେ ଦେଖିବାକୁ ପାଇବେ। ସମ୍ପାଦକ ଏହାକୁ ସର୍ବସାଧାରଣଙ୍କ ଜ୍ଞାତ

* **ବାଲେଶ୍ୱରରୁ ପ୍ରକାଶିତ "ବାର୍ତ୍ତା" ୧୯୮୧ ମସିହା ଜାନୁଆରୀ ସଂଖ୍ୟା ଦ୍ରଷ୍ଟବ୍ୟ।**

ନିମନ୍ତେ ସରକାରୀ ଯୋଡ଼ା ତାଲି ବଶିଷ୍ଟ ରୁଦ୍ଧ ଆଲମିରାରୁ ବାହାର କରି ଆଣିବା ପାଇଁ ତଦାନନ୍ତନ କଲ୍ଲାପାଳଙ୍କୁ ଅନୁରୋଧ କରିଥିଲେ ।

## ଲିଖିତ ଇଚ୍ଛାପତ୍ରର ଅବିକଳ ନକଲ

ଆମ୍ଭେ ଫକୀରମୋହନ ସେନାପତି, ପିତାଙ୍କ ନାମ ଲକ୍ଷ୍ମଣ ଚରଣ ସେନାପତି, ଜାତି ଖଣ୍ଡାୟତ, ବୟସ ୭୦ ବର୍ଷ ପ୍ର: ସୁନହଟ ମୌ: ମଲ୍ଲିକାଶପୁର, ବାଲେଶ୍ୱର ।

ଚରମ ପରମିଦଂ କାର୍ଯ୍ୟଞ୍ଚ ଆରେ, ଯେହେତୁ ଆମ୍ଭର ଜୀବନକାଳ ଅବସାନ ପ୍ରାୟ । ଅତଏବ ଆମ୍ଭର ସ୍ୱ-ଉପାର୍ଜିତ ସ୍ଥାବରାସ୍ଥାବର ସମ୍ପତ୍ତିର ବିଲି ବନ୍ଦୋବସ୍ତ କରାଯିବା ଆବଶ୍ୟକ । ଆମ୍ଭର ମୃତ୍ୟୁ ଉତ୍ତରେ ଆମ୍ଭର ପରିତ୍ୟକ୍ତ ସମ୍ପତ୍ତିର ଯେରୂପ ଅବସ୍ଥା ହେବ ସେଥିରେ ବନ୍ଦୋବସ୍ତ ବିଷୟ ଉଲ୍ଲେଖ କରୁଅଛୁ ।

(୧) ଯେହେତୁ ଆମ୍ଭର ପୁତ୍ର ମୋହିନୀ ମୋହନ ସେନାପତି, ତାହାର ଜ୍ଞାନ ଜାତ ହେବା ଦିନରୁ ଆମ୍ଭର ଶରୀର ପ୍ରତି, ଆମ୍ଭର ଅର୍ଥ, ମାନ ସମ୍ଭ୍ରମ ପ୍ରତି ନିତାନ୍ତ ନିଷ୍ଠୁର ବ୍ୟବହାର କରି ଆସୁଅଛି । ଆମ୍ଭଙ୍କୁ ଅକାରଣରେ ନିତାନ୍ତ କଷ୍ଟ ଦେବା ତାହାର କର୍ତ୍ତବ୍ୟ ଏବଂ ତାହା ପକ୍ଷରେ ଅତ୍ୟନ୍ତ ଆନନ୍ଦକର ବୋଲି ଜ୍ଞାନ କରି ସେ ପ୍ରକାଶ୍ୟ ରୂପେ ଆମ୍ଭମାନଙ୍କୁ ଏବଂ ଆମ୍ଭର ସମସ୍ତ ସମ୍ପତ୍ତିକୁ ପରିତ୍ୟାଗ କରି ଯାଇଅଛି । ଅତଏବ ସେ ଆମର ତ୍ୟଜ୍ୟ ପୁତ୍ର ଅଟେ ।

ଆମ୍ଭର ମୃତ୍ୟୁ ଉତ୍ତରୁ ଆମ ସମ୍ପତ୍ତିରେ ତାହାର କିଛିମାତ୍ର ଅଧିକାର ନାହିଁ ଏବଂ ସେ ଧର୍ମଦ୍ରୋହୀ ନାସ୍ତିକ ଥିବା ହେତୁରୁ ଆମ୍ଭ ମୃତ୍ୟୁ ପରେ ଆମ୍ଭର ପରଲୋକଗତ ଆତ୍ମା ପ୍ରତି କୌଣସି ଶ୍ରାଦ୍ଧାଦି କରିବ ନାହିଁ ।

(୨) ଆମ୍ଭର ମୃତ୍ୟୁ ଉତ୍ତାରେ ଆମର ବଧୂ ୱ ରଜନୀକାନ୍ତ ଘୋଷଙ୍କ କନ୍ୟା ଶ୍ରୀମତୀ ହିରଣପ୍ରଭା ଦେବୀ ତାହାର ଜୀବନକାଳ ପର୍ଯ୍ୟନ୍ତ

ଆମର ସମସ୍ତ ପ୍ରକାର ପରିତ୍ୟକ୍ତ ସ୍ଥାବରାସ୍ଥାବର ସମ୍ପତ୍ତିର ଉତ୍ତରାଧିକାରିଣୀ ହେବେ ଏବଂ ତତ୍ପରେ ଆମ୍ଭମାନଙ୍କ ନାତୁଣୀ ମୀରା ବାଈ, ମିରା ବାଈ ଏବଂ ରାଣୀପାଣି ଦେଈଙ୍କୁ ସେମାନଙ୍କ ବିବାହ କାଳ ପର୍ଯ୍ୟନ୍ତ ସାହାଯ୍ୟ କରିବ ।

(୩) ଆମର ସମ୍ପତ୍ତିକୁ କୌଣସି ପ୍ରକାର ଦାନ, ବିକ୍ରୟ ବା ହସ୍ତାନ୍ତର କରି ପାରିବ ନାହିଁ ।

(୪) ନିମ୍ନଲିଖିତ କେତୋଟି ବିଷୟ ପାଳନ କରିବା ନିମନ୍ତେ ହରଣପ୍ରଭା ଦେବୀ ସମ୍ପୂର୍ଣ୍ଣ ବାଧ୍ୟ ରହିବେ ।

(୫) ପ୍ରତିବର୍ଷ ଭାଦ୍ର ଶୁକ୍ଳପକ୍ଷ ଦଶମୀ ଦିନରେ ଆମ୍ଭର ଧର୍ମପରାୟଣା ସ୍ୱର୍ଗଗତା ସହଧର୍ମିଣୀ କୃଷ୍ଣାକୁମାରୀ ଦେବୀଙ୍କର ବାଲେଶ୍ୱରସ୍ଥିତ ସମାଧି ସମ୍ମୁଖରେ ଏକଶତ ଟଙ୍କାର ଖାଦ୍ୟଦ୍ରବ୍ୟ ବନ୍ଧୁ-ବାନ୍ଧବ, ପ୍ରତିବାସୀମାନଙ୍କୁ ବିତରଣ କରିବ । ହରଣପ୍ରଭା କିମ୍ବା ଯେ କୌଣସି ବ୍ୟକ୍ତି ଆମ୍ଭର ସମ୍ପତ୍ତିର ଅଧିକାରୀ ହେବେ, ସେମାନେ ପ୍ରତିବର୍ଷ ଉକ୍ତ ସମାଧି ସମୀପରେ ଉକ୍ତ ଟଙ୍କାର କ୍ରିୟା କରିବାକୁ ବାଧ୍ୟ ରହିଲେ । ମୌ: ଚନ୍ଦ୍ରାଗଡ଼ସ୍ଥିତ ଆମ୍ଭର ଶାନ୍ତକାନନକୁ ସମ୍ପୂର୍ଣ୍ଣରୂପେ ହେପାଜତ କରି ରଖିବେ ।

(୬) ଶ୍ରୀ ବାବୁ ଶ୍ରୀକଣ୍ଠ ପଟ୍ଟନାୟକ ଅଦ୍ୟାବଧି ୩୫ ବର୍ଷକାଳ ଯାବତ୍ ଅତି ବିଶ୍ୱସ୍ତତା ସହିତ ଆମ୍ଭର ଗୁମାସ୍ତାଗିରି କାର୍ଯ୍ୟ କରି ଆସୁଅଛି । ଅନେକ ପ୍ରକାର ମାଲି ମାମଲି ବିପଦରୁ ଜମିଦାରୀ ରକ୍ଷା କରିଅଛି ଏବଂ ତାହାର ତତ୍ତ୍ୱାବଧାନ ଦ୍ୱାରା ଆମ୍ଭର ବିଷୟ ଉନ୍ନତି ଲାଭ କରିଅଛି । ସେ ଆମର ଏକମାତ୍ର ବିଶ୍ୱାସୀ ଏବଂ ସହାନୁଭୂତିକାରୀ ବନ୍ଧୁ ଅଟେ । ସେ ଯାବଜ୍ଜୀବନ ଆମ ସମ୍ପତ୍ତିର ମ୍ୟାନେଜର ସ୍ୱରୂପ ହୋଇ ରହିବ । ଆମର ବ୍ୟୟ ସମସ୍ତ ହିସାବ କେବଳ ହରଣପ୍ରଭା ଦେବୀଙ୍କୁ ବୁଝାଇବ । ହରଣପ୍ରଭା ଦେବୀ ଅଧୀନସ୍ଥ କର୍ମଚାରୀ ବୋଲି ଶ୍ରୀକଣ୍ଠ ଆପଣାକୁ ଜ୍ଞାନ ମନେ କରିବ । ଆମ ଜମିଦାରୀର ଦଲିଲ ଦସ୍ତାବିଜ୍ ପ୍ରଭୃତି ଶ୍ରୀକଣ୍ଠ ପଟ୍ଟନାୟକ ଜିମାରେ ଅଛି । ସେ ସମସ୍ତ ହରଣପ୍ରଭା ଦେବୀ ଭିନ୍ନ ଅନ୍ୟ କାହାରିକୁ ଦେବ ନାହିଁ ।

ଯେ କୌଣସି କାରଣରୁ ହେଉ ହରପ୍ରିୟା ଦେଈ ଯଦି ଶ୍ରୀକଣ୍ଠ ପଟ୍ଟନାୟକଙ୍କୁ କର୍ମରୁ ବରଖାସ୍ତ କରେ ସେ ଆମର ସମ୍ପତ୍ତିରୁ ଯାବଜ୍ଜୀବନ ମାସିକ ଟ ୭-୦୦ ହିସାବ ( ସାତ ଟଙ୍କା ହିସାବ ) ରେ ପେନ୍‌ସନ୍ ପାଇବ ।

(୭) ଆମର ସମ୍ପତ୍ତି ବ୍ୟୟରେ ଶ୍ରୀକଣ୍ଠ ପଟ୍ଟନାୟକର ପୁତ୍ର ହରମୋହନ ପଟ୍ଟନାୟକଙ୍କୁ ଉଚ୍ଚ ଶିକ୍ଷା ଦିଆଯିବ । ତାହାର ୧୮ ବର୍ଷ ବୟସ ପର୍ଯ୍ୟନ୍ତ ବିଦ୍ୟା ଶିକ୍ଷା ନିମନ୍ତେ ମାସିକ ୧୦ ଟଙ୍କା ( ଦଶ ଟଙ୍କା ) ହିସାବରେ ଖର୍ଚ୍ଚ ପ୍ରାପ୍ତ ହେବ । ମାତ୍ର ସେ ଯଦି ପାଠରେ ଅମନୋଯୋଗୀ ହୁଏ କିମ୍ବା ପାଠ ତ୍ୟାଗ କରେ ଏହି ବୃତ୍ତି ରହିତ କରାଯିବ ।

(୮) ହରପ୍ରିୟା ଦେଈଙ୍କର ଜୀବନକାଳ ମଧ୍ୟରେ ଯଦି ତାହା ଗର୍ଭରୁ ପୁତ୍ରମାନେ ଜାତ ହୋଇଥାନ୍ତି ସେ ବା ସେମାନେ ଆମ ଅନ୍ତେ ସମ୍ପତ୍ତିର ଉତ୍ତରାଧିକାରୀ ହେବେ । ଅନ୍ୟଥା ଆମର ସମସ୍ତ ସମ୍ପତ୍ତି ଆମର ସ୍ୱର୍ଗତା ପତ୍ନୀ ୬ କୃଷ୍ଣକୁମାରୀ ଦେଈଙ୍କ ନାମରେ ଉତ୍ସର୍ଗୀକୃତ ହେବ । ସେଥିରେ ଉପସ୍ୱତ୍ୱରୁ ବାଲେଶ୍ୱରସ୍ଥିତ ବାଳିକାବିଦ୍ୟାଳୟମାନଙ୍କୁ ପ୍ରଦତ୍ତ ହେବ । ବିଦ୍ୟାଳୟର ସମ୍ପାଦକମାନେ ଆପଣା ଆପଣା ପ୍ରାପ୍ୟ ଆଦାୟ କରିବାକୁ ଯତ୍ନବାନ ହେବେ ।

(୯) ଆମ୍ଭର ବଧୂ ଯଦି ବାଲେଶ୍ୱର ସମ୍ପର୍କ ତ୍ୟାଗ କରି ଚିରକାଳ ପାଇଁ ଅନ୍ୟତ୍ର ବାସ କରିବେ କିମ୍ବା ଆମର ଲିଖିତ ସର୍ତ୍ତମାନ ପାଳନରେ ତ୍ରୁଟି କରିବେ, ତେବେ ଆମ୍ଭର ସମ୍ପତ୍ତି ଅଧିକାରୀରୁ ବିଚ୍ୟୁତ ହେବେ ।

ଆମ୍ଭର ଦୃଢ଼ ବିଶ୍ୱାସ ଈଶ୍ୱର ବିଶ୍ୱାସିନୀ ଧର୍ମପରାୟଣା ବଧୂ ଅନ୍ତତଃ ଆମ୍ଭ ଧର୍ମରକ୍ଷା ପାଇଁ ଆମ୍ଭର ପରଲୋକଗତ ଆତ୍ମାର ତୃପ୍ତି ସାଧନ ନିମନ୍ତେ ଆମ୍ଭର ଲିଖିତ ସମସ୍ତ ବିଷୟ ସମ୍ପୂର୍ଣ୍ଣ ରୂପେ ପାଳନ କରିବ ।

(୧୦) ଆମ୍ଭର ଧାର୍ମିକ ଜାମାତା ୬ ଗଙ୍ଗା ନାରାୟଣ ଚୌଧୁରୀଙ୍କ ପୁତ୍ର ବାବୁ ରଘୁନାଥ ପ୍ରସାଦ ଚୌଧୁରୀଙ୍କୁ ଆମ୍ଭର ତ୍ୟକ୍ତ

ସମ୍ପତ୍ତିର ତତ୍ତ୍ୱାବଧାରକ ସ୍ୱରୂପ ନିଯୁକ୍ତ କଲୁଁ । ବଧୂ ହିରଣ୍ମୟୀ ଅଥବା ଯେ କୌଣସି ଲୋକ ଆମ୍ଭ ତ୍ୟକ୍ତ ସମ୍ପତ୍ତିରେ ଅଧିକାରୀ ହେବେ । ସେ ବାବୁ ରଘୁନାଥ ପ୍ରସାଦ ଚୌଧୁରୀଙ୍କ ପରାମର୍ଶ ଅନୁସାରେ ସମସ୍ତ କାର୍ଯ୍ୟ କରିବ । ( ଇତି )

୧୯-୬-୧୯୧୪ ମସିହା
ଲେଖକ—ଶ୍ରୀ କାଳନ୍ଦୀ ନାୟକ
ଦସ୍ତଖତ—ଶ୍ରୀ ଫକୀର ମୋହନ ସେନାପତି

ସେନାପତିଙ୍କର ଇଚ୍ଛାପତ୍ର ବିରୁଦ୍ଧରେ ମକଦ୍ଦମା ୧୯୨୨ ମସିହା ହୁଇକୁ ଶେଷ ହୋଇଥିଲା ।

ଯେଉଁ ସାହିତ୍ୟ-ରଥୀ ଓଡ଼ିଆ ଭାଷାକୁ ବିପଦ ମୁଖରୁ ଉଦ୍ଧାର ଆଣି କୂଳରେ ଲଗାଇ ଥିଲେ । ତାଙ୍କର ପରିବାରରେ ଓଡ଼ିଆ ଭାଷାର ବିପର୍ଯ୍ୟୟ । ବଙ୍ଗୀୟ ଚଳନର ସେମାନେ ପତ୍ନୀ ନଥିଲେ ଏହାହିଁ ଆଶ୍ଚର୍ଯ୍ୟ ସମସ୍ତ ନାତୁଣୀ ବଙ୍ଗଳା ଭାଷାର ଆଶ୍ରୟ ଗ୍ରହଣ କରିଥିଲେ ମାତାଙ୍କ ଯୋଗୁଁ ।

ଫକୀରମୋହନଙ୍କ ଦ୍ୱିତୀୟା ପତ୍ନୀ ୰ କୃଷ୍ଣାକୁମାରୀଙ୍କ ଗୁଣ ବର୍ଣ୍ଣନା କରିବାକୁ ଯାଇ ✱ ବ୍ୟାସକବି ତାଙ୍କ ଆତ୍ମଜୀବନ ଚରିତରେ ଲେଖିଛନ୍ତି— "ସାଂସାରିକ ସମସ୍ତ ଦୁଃଖ, ଦୁର୍ଦ୍ଦଶା ମୋଚନ, ସୌଭାଗ୍ୟ ସୁଖ, ସମ୍ପତ୍ତି ବର୍ଦ୍ଧନ ନିମନ୍ତେ ଦୟାମୟ ପରମେଶ୍ୱର ପଠାଇଥିଲେ—୰କୃଷ୍ଣାକୁମାରୀଙ୍କୁ । ସତ୍ୟ, ନିଷ୍ଠା, ପତିପରାୟଣା, ଧାର୍ମିକା, ସମସ୍ତ ପ୍ରକାର ସଦ୍‌ଗୁଣ ତାଙ୍କଠାରେ ପରିପୂର୍ଣ୍ଣ ଥିଲା । ସେ ୧୮୯୪ରେ ଗୋଟିଏ ପୁତ୍ର ଗୋଟିଏ କନ୍ୟା ରଖି ଚାଲିଗଲେ ।" ✱

ସେନାପତି ସ୍ତ୍ରୀ ବିୟୋଗରେ ଏପରି ଭଗ୍ନ ମନୋରଥ ହୋଇ ପଡ଼ିଥିଲେ ଯେ ସେହିଦିନଠାରୁ ସେ ନିଜର ମସ୍ତିଷ୍କରେ ଯନ୍ତ୍ରଣା ଅନୁଭବ କରିବାକୁ ଆରମ୍ଭ କରିଥିଲେ । ଜୀବନରେ ନିଃସଙ୍ଗ ଦୁଃଖ ତାହାଙ୍କୁ

✱ ଆତ୍ମଜୀବନ ଚରିତ ଫକୀରମୋହନ, ୰ କୃଷ୍ଣାକୁମାରୀ ମୃତ୍ୟୁ ୧୮୯୪ରେ ଲିଖିତ ।

ବହୁ ପ୍ରକାର ତାଡ଼ନା ଦେଇଥିଲା । ସେଥିରୁ ଶାନ୍ତି ପାଇଁ "ଶାନ୍ତିକାନନ"ର ପ୍ରସ୍ତୁତି ମାତ୍ର ।

ନିଜର ବାସଗୃହ ଉତ୍ତରକୁ ୧୫ ହାତ ଦୂରରେ ୰ କୃଷ୍ଣାକୁମାରୀଙ୍କର ସମାଧି ପ୍ରସ୍ତୁତ କରି ସେଠାରେ ସେ ନିଜର ପ୍ରାର୍ଥନା ଗୃହରୁ ବାହାରି ଆସି ପ୍ରତ୍ୟହ ସେହି ସମାଧି ନିକଟରେ କିଛି ସମୟ ବସୁଥିଲେ । ଯେତେବେଳେ ବାଲେଶ୍ୱର କମ୍ବା ଓଡ଼ିଶାରେ ମାର୍ବଲ ପଥରରେ କୌଣସି ଓଡ଼ିଆ ଅକ୍ଷରରେ ଖୋଦିତ ହୋଇ ନ ଥିବାରୁ ସେ ନିଜେ କଲିକତାରୁ ଗୋଟିଏ ଫଳକରେ ଲେଖାଇ ଆଣି ୰ କୃଷ୍ଣାକୁମାରୀଙ୍କ ସମାଧିରେ ବସାଇ ଦେଇଛନ୍ତି, ତାହା ଅଦ୍ୟାବଧି ସୁରକ୍ଷିତ । ଏହା ଗୋଟିଏ ଗୋଲାକାର ଜଙ୍ଗଲାକୀର୍ଣ୍ଣ ସ୍ଥାନରେ ପରିଣତ ହୋଇ ରହିଥିଲା । ଅଳ୍ପବର୍ଷ ପୂର୍ବରୁ ତାହାକୁ ପରିଷ୍କାର କରାଯାଇ ସୁରକ୍ଷିତ କରାଯାଇଛି ।

ସେହି ପ୍ରସ୍ତରରେ ଲେଖାମାନ ଏଠାରେ ଉଦ୍ଧୃତ କରାଗଲା ।

ଓଁ

ତତ୍ ସତ୍

୰ କୃଷ୍ଣାକୁମାରୀ ଦେବୀ

ଶ୍ରୀ ଫକୀରମୋହନ ସେନାପତିଙ୍କ ଭକ୍ତିମତୀ, ସତୀ, ସାଧ୍ୱୀ, ପତିପରାୟଣା, ସହଧର୍ମିଣୀ

ଜନ୍ମ ସନ ୧୨୮୨ ମାର୍ଗଶୀର ୧୯ ତାରିଖ ରବିବାର

ସ୍ୱର୍ଗପ୍ରାପ୍ତି ସନ ୧୮୧୬ ଭାଦ୍ର ୨୭ ତାରିଖ ରବିବାର ଶୁକ୍ଳ ଦଶମୀ

ଏହି ସଙ୍ଗୀତ ଗାନ କରି ଦେହ ତ୍ୟାଗ କଲେ ।

"ହରି ବୋଲ, ହରି ବୋଲ, ହରି ବୋଲ
ହରି-ହରି-ହରି ବୋଲ ଭବସିନ୍ଧୁ ପାରିଚଲ
ଜଳେ ହରି ସ୍ଥଳେ ହରି ଚନ୍ଦ୍ରେ ହରି ସୂର୍ଯ୍ୟେ ହରି
ଅନଳେ, ଅନିଳେ ହରି ହରିମୟ ଏହି ଭୂମଣ୍ଡଳ
ପ୍ରଭୋ ! ତୁମ୍ଭର ମଙ୍ଗଳମୟୀ ଇଚ୍ଛା ପୂର୍ଣ୍ଣ ହେଉ ।

ଯେତେବେଳେ ସରକାର ଫକୀରମୋହନଙ୍କର ପତନୋନ୍ମୁଖୀ ବାସଗୃହ ଓ ଚତୁଃପାର୍ଶ୍ୱର ଜମି ଦଖଲ ନେଲେ, ସେତେବେଳେ ତାଙ୍କର ନାତୁଣୀ ବୀଣାପାଣି ମିଶ୍ର ଏକଲକ୍ଷ ଦୁଇଶହ ଚଉବିଶ ଟଙ୍କା ପାଇ ସୁଦ୍ଧା ଅଧିକ ଟଙ୍କା ଦାବୀ କରିବାର କାରଣ ସ୍ୱରୂପ ଦେଖାଇଛନ୍ତି ଯେ— Besides these, a memorial of Vyasa Kavi wife stands on the premises. ★

## ୧୯୪୪ ମହିହା ବାଲେଶ୍ୱରରେ ପ୍ରଥମେ କଲେଜ ପ୍ରତିଷ୍ଠା

୧୯୩୫ ମସିହାରେ ବ୍ରିଟିଶ ଜାତି ତାଙ୍କ ପାର୍ଲିଆମେଣ୍ଟରେ ଏକ ଆଇନ ପ୍ରଣୟନ କରି ଭାରତର ଜନସାଧାରଣଙ୍କ ହାତରେ କିଛି କ୍ଷମତା ଅର୍ପଣ କରିଥିଲେ । ଏହା ଏକ ଐତିହାସିକ ଘଟଣା ସ୍ଥିର ହୋଇଥିଲା ଯେ ଆଇନର ପ୍ରାଦେଶିକ ଅଂଶ ପ୍ରଥମେ କାର୍ଯ୍ୟକାରୀ ହେବ । ତା'ପରେ କେନ୍ଦ୍ର ସମ୍ବନ୍ଧୀୟ ଅଂଶ ଗ୍ରହଣ କରାଯିବ । ଜାତୀୟ କଂଗ୍ରେସ ସେତେବେଳେ ଏ ଆଇନର ସମ୍ପୂର୍ଣ୍ଣ ବିରୋଧ କରୁଥିଲେହେଁ ଏହାକୁ ପରୀକ୍ଷା କରିବା ନିମନ୍ତେ ଗ୍ରହଣ କରିଥିଲେ । ଆଇନକୁ କାର୍ଯ୍ୟକାରୀ କରିବା ଦିଗରେ ସହାୟତା ନୁହେଁ ମାତ୍ର ଦେଶ ଲୋକେ କଂଗ୍ରେସକୁ କେତେ ସମର୍ଥନ କରନ୍ତି ତାହା ନିଜେ ଓ ବ୍ରିଟିଶ ସରକାରଙ୍କୁ ଦେଖାଇବା ପାଇଁ ନିର୍ବାଚନ ଲଢ଼ିବାର ସ୍ଥିର କରାଯାଇଥିଲା ।

---

★ L. R. Case No.—29 of 1976. 1st when acquisition started requisition of land for memorial of late Vyasakabi Fakir Mohan, Mallikashpur in Khata No. 46 and 49, Plot No. 147. Land acquired in the list under extra-ordinary gazate March 22/1975 A-0-63 decils. The parties are Smt. Maitri Sukla 2. Maya Dutta, 3. Braja Mohan Senapati, 4. Sri Surendra Mohan Senapati, 5. Adinaga Senapati, 6. Hari Mohan Senapati, (7) Anjan Sukla and Mrs Gopa Desceaza have no interest. Maya Dutta admitted family partition. Only Binapani Mishra remained as claiment. In the Court of Sub-judge, Balasore.

କଂଗ୍ରେସ ବଙ୍ଗଳା, ପଞ୍ଜାବ ଏହି ଦୁଇଟି ପ୍ରଦେଶ ବ୍ୟତୀତ ଅନ୍ୟ ପ୍ରଦେଶମାନଙ୍କରେ ଜୟଲାଭ କଲା । ହେଲେ କଣ ହେବ କ୍ଷମତା ବିଦେଶୀ ଶାସକ ହାତରେ ରହିଥିବାରୁ କଂଗ୍ରେସ ଭିତରେ ଏହି ସୀମିତ କ୍ଷମତା ଆଦୃତ ହେଲା ନାହିଁ, କେବଳ କାରାମୁକ୍ତ ମୁଖଗୁଡ଼ିକୁ ଶାସକ ଆସନରେ ଦେଖି ଦେଶବାସୀଙ୍କ ଏକ ପ୍ରକାର ବିଜୟ ଆସ୍ୱାଦନ ମିଳି ଥିଲା ଓ ବାୟୁମଣ୍ଡଳରେ ଆଶାବାଦିତା ଓ ଆତ୍ମ ପ୍ରତ୍ୟୟ ପରିଲକ୍ଷିତ ହୋଇଥିଲା । ସେତେବେଳେ ନିର୍ବାଚିତ ପ୍ରତିନିଧି ଭାବରେ ଶ୍ରୀ ବିଶ୍ୱନାଥ ଦାସ ଓଡ଼ିଶାରେ ହେଲେ ପ୍ରଧାନ ମନ୍ତ୍ରୀ । ବାଲେଶ୍ୱରର ୰ ମୁକୁନ୍ଦ ପ୍ରସାଦ ଦାସ, ଶ୍ରୀ ନନ୍ଦକିଶୋର ଦାସ ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତି ଲକ୍ଷ୍ୟ କରାଗଲା ଯେ ଇଂଲଣ୍ଡରୁ ଯେଉଁ କ୍ରିପ୍ସ୍ ମିଶନ ବ୍ରିଟିଶ ପଠାଇ ଥିଲା ସେତେବେଳେ ଜାତୀୟ ସରକାର ଓ ମନ୍ତ୍ରୀ ପରିଷଦ କଥା ଉଠାଇଥିଲେ । ତାଙ୍କର ବ୍ୟାଖ୍ୟାରେ ଜଣାଗଲା ଯେ ସ୍ୱାୟତ୍ତ ଶାସନ କଥାଟି ଏକବାରେ ଫମ୍ପା । କେବଳ ଭାରତର ବଡ଼ଲାଟଙ୍କ ଶାସନ ପରିଷଦର ସମ୍ପ୍ରସାରଣ କଥାହିଁ ସାର, ସେତେବେଳେ କଂଗ୍ରେସ ପ୍ରତ୍ୟେକ ପ୍ରଦେଶରୁ ମନ୍ତ୍ରୀମାନଙ୍କୁ ଓହରି ଆସିବା ପାଇଁ ନିର୍ଦ୍ଦେଶ ଦିଆଗଲା । ସେ ଡାକରାରେ ଯେଉଁମାନେ ଶାସନ ଗାଦି ଛାଡ଼ି ନ ଆସିଲେ ସେମାନଙ୍କୁ ଦେଶଦ୍ରୋହୀ ଆଖ୍ୟାରେ ଆଖ୍ୟାୟିତ କରାଗଲା ।

ଓଡ଼ିଶା ୧୯୩୬ ମସିହାରେ ବିହାର ପ୍ରଦେଶଠାରୁ ଅଲଗା ହୋଇଥିଲେ ମଧ୍ୟ ତାର ବିଶ୍ୱବିଦ୍ୟାଳୟ, ଉଚ୍ଚ ନ୍ୟାୟାଳୟ, କମିଶନର କୌଣସି ପ୍ରକାର ସୁବିଧା ନଥିଲା । ଯେଉଁ ମନୀଷୀମାନେ ଓଡ଼ିଆ ଜାତିକୁ ଓଡ଼ିଆ ପ୍ରଦେଶ ଦେଇ ଅମର ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ପାରଳା ମହାରାଜା ଗଜପତି ୰ କୃଷ୍ଣଚନ୍ଦ୍ର ପ୍ରାତଃସ୍ମରଣୀୟ ଏ ଜାତି ନିଜର ପ୍ରଦେଶ ବୋଲି ଓଡ଼ିଶାକୁ ଗଣ୍ୟ କରୁଥିବା ପର୍ଯ୍ୟନ୍ତ ତାଙ୍କୁ ସ୍ମରଣ ରଖିବ । ସେ ବିଷୟ ଏଠାରେ ଲେଖିବା କାମ୍ୟ ନୁହେଁ । କଂଗ୍ରେସ ଲୋକେ ସରକାରରୁ ଓହରି ଆସିଲେ । ମାତ୍ର ଗଜପତି, ପୁଣ୍ୟାତ୍ମା ୰ ପଣ୍ଡିତ ଗୋଦାବରୀଶ ମିଶ୍ର, ୰ ଶୋଭନ ଖାଁ, ଏହିମାନେ କଂଗ୍ରେସ ମନ୍ତ୍ରୀମଣ୍ଡଳରୁ ଓହରି ନଆସି ମନ୍ତ୍ରୀ ସ୍ଥାନ ଦଖଲ କରି ସରକାର ଗଠନ କଲେ । ଉଦ୍ଦେଶ୍ୟ ଥିଲା ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତିର ଚେଷ୍ଟା ସେମାନେ ମଧ୍ୟ କଂଗ୍ରେସ ସହିତ ନିର୍ବାଚିତ ହୋଇଥିଲେ ।

ପ୍ରଥମେ ଓଡ଼ିଶାରେ ଶିକ୍ଷାର ପ୍ରସାର ପାଇଁ ଯେଉଁ ମନୀଷୀ ଦ୍ୱାରେ ଦ୍ୱାରେ ଆଘାତ କରିଥିଲେ ସେ ଥିଲେ ପଣ୍ଡିତ ଗୋଦାବରୀଶ ମିଶ୍ର । ତାଙ୍କ ମନ୍ତ୍ରୀତ୍ୱର ସଫଳତା ପାଇଁ ସେ ସବୁ ଜିଲ୍ଲାରେ କଲେଜ ସ୍ଥାପନ ବ୍ୟବସ୍ଥାରେ ବ୍ୟଗ୍ର ହୋଇ ଉଠିଲେ ।

ସେ ଯୁଗରେ ଓଡ଼ିଶାର ଶିକ୍ଷା ବାଣିଜ୍ୟ ଓ ଅର୍ଥନୈତିକ ପରିସ୍ଥିତି ଅତି ନିମ୍ନରେ ପଡ଼ି ରହିଥିଲା । ବିହାର ସହିତ ଓଡ଼ିଆ ଜାତିର ଦୈନ୍ୟ ତୋର ଗୁହାରି । ସ୍ୱତନ୍ତ୍ର ରାଜଧାନୀ ନଥିଲା । ଓଡ଼ିଆ ଜାତିର ଭାଗ୍ୟକୁ ଉଜ୍ଜ୍ୱଳ କରିବା ପାଇଁ ଯେଉଁମାନଙ୍କର ଲକ୍ଷ୍ୟ ଥିଲା ସେମାନେ ଆଜି ନମସ୍ୟ ।

ମୁକୁନ୍ଦ ପ୍ରସାଦ ଦାସଙ୍କ ଷ୍ଟେସନ ନିକଟରେ ଥିବା ବାସଭବନକୁ ଗୋଦାବରୀଶ ଧାଇଁ ଆସିଥିଲେ । ଶିକ୍ଷା, ଅର୍ଥନୀତି, କୃଷି, ବାଣିଜ୍ୟ, କୌଶଳକଳା ଆଦି ବହୁକ୍ଷେତ୍ରରେ ଆଗୁଆ ବାଲେଶ୍ୱର ଆଜି ସୁପ୍ତ ଦେଖି ସେ ଦୁଃଖ ପ୍ରକାଶ କରିଥିଲେ । ସେ ଚାହୁଁଥିଲେ ଯେ କଲେଜ ପ୍ରତିଷ୍ଠା ପାଇଁ ଏକ ପ୍ରସ୍ତାବ ତାଙ୍କ ପାଖରେ ଯାଇ ଶୀଘ୍ର ପହଞ୍ଚି ଯାଉ । ରାଜନୀତିର ସ୍ରୋତ ସେତେବେଳେ ଏପରି ବେଗଗାମୀ ଥାଏ ଯେ ସେ ସ୍ରୋତରୁ ଓହରି ଆସି ଏକତ୍ର ବସି ସେଦିନ ଏକ ପ୍ରସ୍ତାବ ଗ୍ରହଣ କରିବା ସମ୍ଭବପର ନଥିଲା ।

ବୟସ୍କ ଲୋକମାନେ ସବୁବେଳେ ଯୁବକମାନଙ୍କର ସାହାଯ୍ୟ ଲୋଡ଼ିଥାନ୍ତି । ତେଣୁ ମୁକୁନ୍ଦ ପ୍ରସାଦ ଦାସ ଜଣେ ଯୁବକକୁ ଏ କାର୍ଯ୍ୟରେ ଲଗାଇ ଗୁରୁଆଡ଼କୁ ପରମାନ ପଠାଇଲେ ।

ଜିଲ୍ଲାସ୍କୁଲ ହଲରେ ବହୁ ଚେଷ୍ଟାରେ ଏଥିପାଇଁ ଏକ ବୈଠକ ବସିଲା । ଏହି ସଭାରେ ଗୁରୁଚରଣ ପଟ୍ଟନାୟକ, ମୁକୁନ୍ଦ ପ୍ରସାଦ ଦାସ, ରାଧାମୋହନ ରଣା, ଜ୍ଞାନରଞ୍ଜନ ପଟ୍ଟନାୟକ, କରୁଣାକର ପାଣିଗ୍ରାହୀ, ପ୍ରାଣକୃଷ୍ଣ ଦାସ, ପ୍ରଫୁଲ୍ଲ ପଟ୍ଟନାୟକ ଓ ଅଚ୍ୟୁତାନନ୍ଦ ଦାସ ଉପସ୍ଥିତ ଥିଲେ । ସେହିଦିନ ସେହି ପ୍ରସ୍ତାବକୁ କରୁଣାକର ପାଣିଗ୍ରାହୀ ନେଇ କଟକ ରମାନା ହେଲେ ।

ସେତେବେଳେ ବୁଦ୍ଧିଜୀବୀମାନଙ୍କ ମଧ୍ୟରୁ ଅଧିକାଂଶ ବଙ୍ଗଭାଷୀ । ଏପରିକି ଜିଲ୍ଲା ବୋର୍ଡ଼, ଲୋକାଲବୋର୍ଡ଼ କର୍ମଚାରୀମାନେ ବଙ୍ଗାଳୀ ଥିଲେ । ହାକିମ, ଅଫିସର କେବଳ ବଙ୍ଗାଳୀ ନୁହନ୍ତି ତଳିଆ କିରାଣୀମାନେ ମଧ୍ୟ ଅଣଓଡ଼ିଆ ଥିଲେ । ବାଲେଶ୍ୱର ବଜାର ଓ କଚେରୀକୁ ଯଦି ଜଣେ ବଙ୍ଗାଳୀ ଆସେ ସେ ଅନାଦର ସହିତ କହିଯାଏ—"ଏ ତ ଆମାଦେର ବାଙ୍ଗଲା ରାଜ୍ୟ ।" ଏହି ପରିପ୍ରେକ୍ଷୀରେ କେତେଜଣ ଓଡ଼ିଆ ଏକାଠି ବସି କଲେଜ ପ୍ରତିଷ୍ଠା ପାଇଁ ଯେଉଁ ଉଦ୍ୟମ କରିଥିଲେ ତାହା ପ୍ରଶଂସାର କଥା । ବିଧାନ ସଭା ସେତେବେଳେ ରେଭେନ୍ସା କଲେଜରେ ବସୁଥିଲା । ସେହି ବର୍ଷ ଜୁଲାଇ ମାସରେ ବାଲେଶ୍ୱର କଲେଜରେ ଆଇ: ଏ: ଶ୍ରେଣୀ ଖୋଲିଗଲା । ପ୍ରିନ୍ସପାଲ ହୋଇ ଆସିଲେ କିଶୋରୀମୋହନ ତ୍ରିବେଦୀ ।

## ଶାନ୍ତକାନନ ରକ୍ଷା ଆନ୍ଦୋଳନ

ଖାଦ୍ୟବସ୍ତୁ ନିୟନ୍ତ୍ରଣ ଦିନଠାରୁ ବଜାରରେ ଦିନକୁ ଦିନ ଦରଦାମ ବୃଦ୍ଧି ପାଇଲା ଶିକ୍ଷା ସଂସ୍କୃତିର ଚେତନା ଦିନକୁ ଦିନ ନିମ୍ନବର୍ଦ୍ଧିଷ୍ଣୁ ହେବାରେ ଲାଗିଛି । "ଭାରତ ଗ୍ଲୁଡ" ଡାକରେ ସହର ମଫସଲ କମ୍ପିତ ହେଉଥାଏ । ଥୋକେ ନେତା ଶାସନ କ୍ଷମତା ପାଇଁ ଆଗଭର ଥିଲାବେଳେ ଆଉ ଦଳେ ଦେଶପ୍ରେମୀ କବିସମ୍ରାଟ, ଧାନକୃଷ୍ଣ, ଜୟଦେବ ଓ ପୁରୀ, କୋଣାର୍କର କଳା ସ୍ଥାପତ୍ୟର ରକ୍ଷା ରାଜନୀତିରେ ବ୍ୟସ୍ତ ଥିଲେ । ଅର୍ଥନୀତିକୁ କେଉଁ ପ୍ରକାରରେ ପରିଚାଳିତ କଲେ ହୀରାକୁଦ, ଡୁଡୁମା ଇତ୍ୟାଦି ପ୍ରସ୍ତୁତ ହୋଇ ଓଡ଼ିଆ ଜାତିର ବନ୍ୟା ମରୁଡ଼ି ସାଙ୍ଗକୁ ଦାରିଦ୍ର୍ୟ ଦୂର କରାଯାଇପାରିବ ଥୋକେ ଏ ଚିନ୍ତାରେ ନିମଗ୍ନ ଥିଲା ବେଳେ କେତେକ କୃତକର୍ମୀ ପୁରୁଷ ନିଜ ଜାତିର ଗୌରବ ରବିକୁ ମେଘାଚ୍ଛନ୍ନ ତମସା ମଧ୍ୟରୁ ବାହାରକୁ ଆଣି ଓଡ଼ିଆ ପୁସ୍ତକମାନ ପ୍ରଣୟନରେ ବ୍ୟସ୍ତ ଥିଲେ । ସିଂଭୂମ, ଷଢ଼େଇକଳା, ମେଦିନୀପୁର ଇତ୍ୟାଦିକୁ କିପରି ଓଡ଼ିଶାରେ ଯୋଡ଼ାଯାଇ ପାରିବ ସେଥିପାଇଁ ଉପାୟ ଖୋଜା ଚାଲିଲା ।

ସେ ଯୁଗରେ ମଧ୍ୟ ବଙ୍ଗଭାଷୀ ବୁଦ୍ଧିଜୀବୀଙ୍କ ଚକ୍ଷୁରେ ଓଡ଼ିଆ ଏକ ଦୀନ ଜାତି ବୋଲି ବିବେଚିତ । ଏହା ହେବା ସ୍ୱାଭାବିକ । କାରଣ ଜାତିର ଗୌରବ ପାଇଁ ସାହିତ୍ୟର ପ୍ରେରଣା ସ୍ୱୀକାର୍ଯ୍ୟ । ଯେଉଁ ଜାତିର

ସାହିତ୍ୟ ନାହିଁ ତାର ଜାତିପ୍ରୁ ସତ୍ତା ନାହିଁ । କାରଣ ସାହିତ୍ୟ ମଧ୍ୟରେହିଁ ଜାତିର ଅବଚେତନ ମନ ନିମଜ୍ଜିତ ଥାଏ। ତାକୁ ଉଦ୍ରେକ କରିବାକୁ ହେଲେ ସେହି ଅବଚେତନ ସାହିତ୍ୟରୁ ବିଶ୍ଳେଷ ନିଆଯାଇ ତାହାର ପୁଷ୍ଟି ବର୍ଦ୍ଧନ କରାଯାଏ ।

ବଙ୍ଗାଳିମାନେ କବିଗୁରୁଙ୍କର ବଂଶଧର । ତାଙ୍କ ସାହିତ୍ୟରେ ନବୀନ ଭାବଧାରା ଓ ତୀବ୍ର ଅନୁଭୂତି ଥିଲା ଅତି ବଳିଷ୍ଠ । ସେମାନଙ୍କର ସାହିତ୍ୟ ତତ୍କାଳୀନ ଭାରତୀୟ ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଆର୍ଥିକ ସ୍ଥିତିର ଯଥାର୍ଥ ପଥପ୍ରଦର୍ଶକ । ତେଣୁ ସେମାନେ ସେହି ସାହିତ୍ୟ ଗାରିମା ବିସ୍ତାର କରି ଓଡ଼ିଆ ଜାତି ଉପରେ ଯେଉଁ ପ୍ରଭୁତ୍ୱ ବିସ୍ତାର କରିବାର ଭାବନା ରଖି କୁଠାରାଘାତ କରୁଥିଲେ ତାହା କାନ୍ତି ଭଟ୍ଟାଚାର୍ଯ୍ୟଙ୍କର "ଓଡ଼ିଆ ଏକଟା ସ୍ୱତନ୍ତ୍ର ଭାଷା ନଏ"ରୁ ଅତି ସ୍ପଷ୍ଟ ।

କବିଗୁରୁଙ୍କ ମୃତ୍ୟୁ ହୁଏ ୧୯୪୧ ମସିହାରେ । ରବୀନ୍ଦ୍ରନାଥଙ୍କ ଜନ୍ମ ଓ ମୃତ୍ୟୁ ଦିବସ କଲିକତାର ପୁରପଲ୍ଲୀରେ ଯେପରି ଗାମ୍ଭୀର୍ଯ୍ୟ ସହକାରେ ପାଳିତ ହୁଏ ତାହା ଚିନ୍ତା କରାଯାଇ ପାରେନା । ଏହି ବାଲେଶ୍ୱରରେ ମଧ୍ୟ କବି ଗୁରୁଙ୍କର ଜନ୍ମ ଓ ମୃତ୍ୟୁ ଦିବସ କ୍ଲବ୍‌ମାନଙ୍କ ହଲରେ ପାଳନ କରାଯାଉଥିଲା । ବାଲେଶ୍ୱରରେ ସେତେବେଳେ ରବୀନ୍ଦ୍ର ସଙ୍ଗୀତର ପ୍ରାଧାନ୍ୟ ଦେଖାଦେଇଥାଏ । ଓଡ଼ିଆରେ ଓଡ଼ିଶୀ, ଛାନ୍ଦ, ଚମ୍ପୂ ଇତ୍ୟାଦି ପାଲାବାଲାଙ୍କ କଣ୍ଠରେ କମ୍ବା ଦକ୍ଷିଣରୁ 'ଗୋଟିପୁଅ' ନାଚ ପିଲା ଆସିଲେ ବାଲେଶ୍ୱରରେ ଶୁଣିବାକୁ ମିଳୁଥିଲା ।

ରବୀନ୍ଦ୍ର ଜୟନ୍ତୀ ପାଳନ କଲାବେଳେ ସେଠାରେ ପୁରୁଷ ଓ ନାରୀମାନଙ୍କର ଏଭଳି ଭିଡ଼ ହୋଇଥାଏ ଯେ ସେଠାରେ ସ୍ଥାନ ପାଇବା ଅତି କାଠିକର ପାଠ ହୋଇଥାଏ । ରବୀନ୍ଦ୍ର ସଙ୍ଗୀତ ପରିବେଷଣ ଯୋଗୁଁ ସଭା ଆଡ଼ମ୍ବରପୂର୍ଣ୍ଣ ହୋଇଥାଏ । ଶ୍ରୀ ସୁକୁମାର ସାହୁ ଅନେକ ବଙ୍ଗୀୟ ଭଦ୍ରବ୍ୟକ୍ତିଙ୍କ କନ୍ୟାମାନଙ୍କୁ ରବୀନ୍ଦ୍ର ସଙ୍ଗୀତ ଶିକ୍ଷା ଦେଉଥାନ୍ତି । ଓଡ଼ିଆ ଝିଅ ଗୋଟିଏ ଗୀତ ବୋଲିବା କମ୍ବା ନାଚିବା ତାହା ସଭାରେ ଦେଖା ଯାଉନଥିଲା ।

ଓଡ଼ିଶୀ ନୃତ୍ୟ କେବଳ କଟକରେ ପରିବେଷିତ ହେଉଥିଲା । ସାନ ୧୯୪୮ ପୂର୍ବରୁ ଓଡ଼ିଶାର ଗଡ଼ଜାତ ରାଜାମାନଙ୍କର ଯେଉଁ ରାଜତ୍ୱ ଚାଲିଥିଲା ସେମାନେ ଅନେକେ ନିଜ ନିଜ ରାଜ୍ୟରେ ବର୍ଗୀୟ ଲୋକଙ୍କୁ ମୁଖ୍ୟ ଆସନରେ ବସାଇଥିଲେ । ଅବଶ୍ୟ ବହୁ ସ୍ଥାନରେ ଓଡ଼ିଆ ଜାତିର କଳା ଓ ସଂସ୍କୃତିକୁ ନିଖୁଣ ଭାବେ ରକ୍ଷା କରିବାକୁ ସେମାନେ ଉଦ୍ୟମ କରିଥିଲେ ।

ମାତାଠାରୁ ଜନ୍ମଭୂମିର ପ୍ରେମ ଯେ କେତେ ଗରୀୟାନ ତାହା ସେମାନେ ବେଶି ଶିଖିଥିଲେ । ଛଉନୃତ୍ୟ, ଚମ୍ପୂ ଇତ୍ୟାଦିର ସେମାନେ ପୃଷ୍ଠପୋଷକତା କରୁଥିଲେ । ବର୍ତ୍ତମାନ ଅତୀତର ସେହି ବିସ୍ମୃତ ସାହିତ୍ୟ ଓ ସଂସ୍କୃତି ଉପରେ ଅଶ୍ରୁ ତର୍ପଣ କରିବା ଯୁଗ ଚାଲି ଗଲାଣି ।

ବାଲେଶ୍ୱରରେ କଲେଜ ଚାଲିଛି ଅଳ୍ପ ମାସ ହେବ । ବିଧିବଦ୍ଧ ଭାବରେ ଆଇ: ଏ: କ୍ଲାସ ଖୋଲା ହୋଇ ଛାତ୍ରଛାତ୍ରୀ ଗ୍ରହଣ କାର୍ଯ୍ୟ ଚାଲିଥାଏ । ଠିକ୍ ସେତିକିବେଳେ ବାଲେଶ୍ୱର ଜିଲ୍ଲା ସ୍କୁଲର ଜଣେ ଧୀସମ୍ପନ୍ନ ଶିକ୍ଷକ ୰ କୁବେର ଦଳେଇ, ଘର ଖୋରଧା ସେହି କଣ୍ଟକପୂର୍ଣ୍ଣ, ପଶୁ କ୍ରୀଡ଼ାସ୍ଥଳୀ ବିଗତ ସୌଭାଗ୍ୟର ଜୀର୍ଣ୍ଣ କଙ୍କାଳ "ଶାନ୍ତକାନନର ପୁନରୁଦ୍ଧାର ଓ ସ୍ମୃତି-ତର୍ପଣ ନିମନ୍ତେ କେତେଜଣଙ୍କ ଦ୍ୱାରସ୍ଥ ହୋଇଥିଲେ ।"

ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ବାଲେଶ୍ୱରରେ କଲେଜ ପ୍ରତିଷ୍ଠା ହେବାରେ ଆନନ୍ଦିତ ହୋଇ ଆସିଥିଲେ ନିଜର ଜନ୍ମ ସ୍ଥାନକୁ । ମଲ୍ଲୀକାଶପୁରରେ ତାଙ୍କର ବନ୍ଧୁ ଶ୍ରୀ ଚିନ୍ତାମଣି ଦାସଙ୍କ ଆତିଥ୍ୟ ଗ୍ରହଣ କରିବାକୁ ଆସି ଶାନ୍ତକାନନର ଅବସ୍ଥା ଦେଖି ସେ କହିଥିଲେ, "ସଂଗ୍ରାମ ଓ ସାଧନାରେ ଯୋଗୀ ହୁଏ ବ୍ରହ୍ମର୍ଷୀ, ଭ୍ରମ ହୁଏ ଭକ୍ଷୁ ।" କେଉଁ ପରିସ୍ଥିତିକୁ ଲକ୍ଷ୍ୟ କରି ସେ ଏହା କହିଥିଲେ ତାହା ଏବେ ବି ଜଣା ନାହିଁ । ତାହାର ଫଳ ସ୍ୱରୂପ ବାଲେଶ୍ୱର ଯୁବକର ଅନ୍ତର୍ଗ୍ଲାନି ସେଦିନ ପ୍ରଶମିତ ହେଲା । ଟମି ଦୁହେଁ ଯେଉଁ ଅଜନ୍ତା ମୂର୍ତ୍ତି ଦେଖିଗଲେ ତାହା ଦେଖି ଛଡ଼ାଇ ନ ରଖିବା ପାପ ସେ ଯୁବକକୁ ଘନ ଘନ ଦଂଶନ କଲା ସେଦିନ ।

# ଶାନ୍ତକାନନ ପ୍ରବେଶର ପ୍ରଥମ ପର୍ବ

ନୀରବରେ ବସି ଶୁଷ୍କ ଚିନ୍ତାର ଅବତାରଣା ଅପେକ୍ଷା ଶାନ୍ତକାନନର ପ୍ରବେଶ ଓ ଏହାର ଅବସ୍ଥା ପର୍ଯ୍ୟବେକ୍ଷଣ ମନୋଭାବ ସେଦିନ ତିନିଜଣ ଉଦ୍ୟୋକ୍ତାଙ୍କୁ ପ୍ରଲୋଭିତ କରିଥିଲା । ସେହି ତିନିଜଣ ହେଲେ ୰ କୁବେର ଦଲେଇ, ଶ୍ରୀ ରାମଚନ୍ଦ୍ର ସେନାପତି ଓ ଶ୍ରୀ ଅଚ୍ୟୁତାନନ୍ଦ ଦାସ । ୧୯୪୫ ମସିହାର ଶେଷ ଭାଗ । ଦିବା ଦ୍ୱିପ୍ରହର ସମୟ । ଶରୀର, ହସ୍ତ, ପଦ, ଚକ୍ଷୁକୁ କ୍ଷତବିକ୍ଷତ କରି ସେଦିନ ସେହି କଣ୍ଟକାକୀର୍ଣ୍ଣ ପଥ ପରିଷ୍କାର କରିବା ପାଇଁ ଉଦ୍ୟାନରେ ପ୍ରବେଶ କରାଗଲା ।

ବ୍ୟାସ କବିଙ୍କର ପ୍ରତିମୂର୍ତ୍ତି ବନ୍ଧ ଲତାଗୁଳ୍ମ ରକ୍ତରେ ରଂଜିତ । ଓଡ଼ିଶାର ବିଶିଷ୍ଟ ଲେଖକମାନଙ୍କ ଲେଖନୀରୁ ସେତେବେଳେ ଫକୀର-ମୋହନ ସାହିତ୍ୟର ସମାଲୋଚନା ଆରମ୍ଭ ହେଲାଣି । ମାତ୍ର ଏ ଜାତି ତାଙ୍କ କୃତି ରକ୍ଷା ପାଇଁ ଦିନେ ହେଲେବି ଚିନ୍ତା କରୁଥିବାର ଲକ୍ଷ୍ୟ କରାଯାଉନଥିଲା ।

ପଦସ୍ପର୍ଶ କରି ନମସ୍କାର କଲେ ଉଦ୍ୟାନ ପ୍ରବେଶ କାରୀଗଣ । ୰ କୁବେର ବାବୁ କହି ଉଠିଲେ "ଧନ୍ୟରେ ଓଡ଼ିଆ ! ତୁ ତୋ ଜାତିର ପୂଜ୍ୟ ଲୋକର ସେବା କରି ଶିଖିଲୁ ନାହିଁ । ଥରେ ପଡ଼ୋଶୀ ରାଜ୍ୟଆଡ଼େ ଚାହିଁ ଦେଖିଲୁ ନାହିଁ, ଏ ଜାତିର ସେନାପତି ପାଇଁ ଗର୍ବ ନକରି ନିଜର ଓଡ଼ିଆତ୍ୱ ଦେଖାଉଛୁ କିପରି ?"

ସେଦିନର ସେହି ବାକ୍ୟ ଉଦ୍ୟୋକ୍ତାଦ୍ୱୟଙ୍କ ମନରେ ଆଣି ଦେଇଥିଲା ନୈତିକ ବଳ । ସ୍ୱାଧୀନତାର ମଧୁ ଚାଖିବା ପାଇଁ ସମସ୍ତେ ବ୍ୟାକୁଳ । ଫକୀରମୋହନଙ୍କ ବଗିଚା, ମୂର୍ତ୍ତି ଏ ସବୁକୁ ଦେଖୁଛି କିଏ ?

ଏ ଯୁଗରେ କିଏ ଓଡ଼ିଆ ପୂଜ୍ୟ ପୂଜା ପାଇଁ ଉପଯୁକ୍ତ ପରିସର ସୃଷ୍ଟି କରି ପାରିନାହିଁ । ବ୍ୟକ୍ତିଗତ ସ୍ୱାର୍ଥ ପାଇଁ । ଜାତିର ସର୍ବସ୍ୱକୁ

ମଧ୍ୟ ସେ ସୁପ୍ରକାଶରେ ବଳି ଦେଇପାରେ । ଏ ଯୁଗରେ ମଧ୍ୟ ଶିଖୀ ମନାଇର ଅଭାବ ନାହିଁ । ସୁପ୍ତ ଜାତିର ଜାଗରଣ ଧାପକୁ ପ୍ରଜ୍ୱଳିତ କରିବ କିଏ ? ଜାତିର ବୈଶିଷ୍ଟ୍ୟ ପରିଚ୍ଛଦକୁ ଉଦ୍ଭାବିତ କରିବାକୁ ହେଲେ ପରିଚ୍ଛଦ ଅନ୍ତରାଳରେ ଯେଉଁ ଗୁଣାବଳୀ ରହିଛି ତାକୁ ବିକଶିତ କରିବାକୁ ହେବ । ସେଥିପାଇଁ କ୍ଷୁଦ୍ର ସ୍ୱାର୍ଥରୁ ଦୂରରେ ରହିବା ମହତ୍ତ୍ୱ ଅଂଶକୁ ପୋଷଣ କରିବା, ମହତ୍ ଚିନ୍ତା ଯେତେ ବାଧା ଘଟିଲେ ମଧ୍ୟ ଫଳବତୀ ହେବା, ଏ ଭାବନାକୁ ଜନନାୟକମାନଙ୍କର ବୋଲି ନ ଭାବିବା ପର୍ଯ୍ୟନ୍ତ ଜାତିର ସଂଜୀବନୀ ମନ୍ତ୍ର ଉଦ୍ଦୀପିତ ହେବ ନାହିଁ ।

ସେଦିନ ସେହି ମୂର୍ତ୍ତିର ପାଦ ସ୍ପର୍ଶ କରି ଉଦ୍ୟୋକ୍ତାମାନେ ଏହାର ଉଦ୍ଧାର ପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିଲେ ।

ମୃତ୍ୟୁ ଦିବସ ପାଳନର ପ୍ରସ୍ତୁତି ଆଗରୁ ତାଙ୍କର ମୃତ୍ୟୁ ଦିବସ ଜୁନ୍ ମାସ ୧୪ ତାରିଖ ରଜ ସଂକ୍ରାନ୍ତି ବୋଲି ସଂଗ୍ରହ କରାଗଲା । ଶାନ୍ତିକାନନର ଉଦ୍ଧାର ଓ ତାଙ୍କର ଦାୟାଦମାନଙ୍କୁ ଭେଟି କାନନର ଅବସ୍ଥା ବିଷୟ ବୁଝାଇବା ଦରକାର ପଡ଼ୁଥିବାରୁ ଗୋଟିଏ ପ୍ରତିନିଧି ଦଳ ବାଲେଶ୍ୱରରୁ କଟକର ଧୂଆଁପଡ ଗଳିକୁ ଯିବା ନିମନ୍ତେ ସିଦ୍ଧାନ୍ତ ନିଆଗଲା ।

ଶ୍ରୀ ରାମଚନ୍ଦ୍ର ସେନାପତି ବାଲେଶ୍ୱର ସହରଠାରୁ ବହୁ ଦୂରରେ ବସବାସ କରୁଥିବା ହେତୁ ସେ ଦୈନନ୍ଦିନ ସାକ୍ଷାତ୍ କିମ୍ବା କାର୍ଯ୍ୟରେ ଯୋଗ ଦେବାର ଅକ୍ଷମତା ପ୍ରକାଶ କଲେ । କୁବେର ବାବୁ ଇତି ମଧ୍ୟରେ ସମ୍ବଲପୁରକୁ ବଦଳି ହୋଇଥିବା ଜଣା ନଥିଲା ।

ଆଇନଜୀବୀ ମଧୁସୂଦନ ରାଏ ତାଙ୍କର ବନ୍ଧୁ ସୟଦ୍ ଅବଦୁଲ ଜବ୍ବାର ଦୁହେଁ ଜଣେ ଉଦ୍ୟୋକ୍ତାଙ୍କ ମୁହଁରୁ ସବୁକଥା ଶୁଣି ସାହାଯ୍ୟ ଦାନ ପାଇଁ ଅକୁଣ୍ଠିତ ଚିତ୍ତରେ ପ୍ରେରଣା ଦାନ କରିଥିଲେ । ସିଦ୍ଧାନ୍ତ ହେଲା ଯେ ଓଡ଼ିଶାର ଖ୍ୟାତନାମା ବ୍ୟକ୍ତିମାନଙ୍କୁ ଡକାଇ ଉଦ୍ୟୋକ୍ତାମାନେ ଯେଉଁ ପ୍ରସ୍ତାବ ଦେଇଛନ୍ତି ତାହା ସେମାନଙ୍କ ସମ୍ମୁଖରେ ରଖାଇ ଅନ୍ୟ ଏକ କମିଟି ଗଠନ କରି ଶାନ୍ତିକାନନର ଉଦ୍ଧାର କାର୍ଯ୍ୟ ଆରମ୍ଭ କରିବେ ।

ସଯୃଦ ଅବଦୁଲ ଜବାରଙ୍କ ଗୃହରେ ବୈଠକର ସ୍ଥାନ ନିରୂପଣ କରାଯାଇ ଦୁଇଜଣ ଉଦ୍ୟୋକ୍ତା ଓଡ଼ିଶାର ଲବ୍ଧପ୍ରତିଷ୍ଠ ସାହିତ୍ୟିକ, ରାଜନୀତିଜ୍ଞ ଓ ସମାଜସେବୀଙ୍କୁ ଡକାଇବାର ବନ୍ଦୋବସ୍ତ କଲେ। ବାଲେଶ୍ୱରର ମୁକୁନ୍ଦ ପ୍ରସାଦ ଦାସଙ୍କୁ ଏଥିରେ ସଭାପତିତ୍ୱ କରିବା ପାଇଁ ଅନୁରୋଧ କରାଯାଇଥିଲା । ମଇ ମାସ ୧୭ ତାରିଖ ସନ୍ଧ୍ୟା ୭ ଘଣ୍ଟା ସମୟରେ ଜବାର ସାହେବଙ୍କ ବାସଗୃହରେ ସାଧାରଣ ବୈଠକ ଅନୁଷ୍ଠିତ ହୋଇ ଶାନ୍ତକାନନର ଉଦ୍ଧାର ଯତ୍ନ ସ୍ଥିର କରାଗଲା । ଏଥିରେ ଯୋଗ ଦେଉଥିଲେ ୰ ମୁକୁନ୍ଦ ପ୍ରସାଦ ଦାସ, ୰ ଜ୍ଞାନରଞ୍ଜନ ପଟ୍ଟନାୟକ, ୰ ରବି ସରକାର, ଶ୍ରୀ ରମାକାନ୍ତ ସାହୁ, ଶ୍ରୀ କିଶୋରୀମୋହନ ଦ୍ୱିବେଦୀ, ୰ ମଧୁସୂଦନ ରାଏ, ମୌଲଭୀ ମହମ୍ମଦ ହନିଫ୍, ୰ ଅସରଫ ଅଲ୍ଲି ଖାଁ। ଓ ୰ ରମେଶ ଚନ୍ଦ୍ର ମହାନ୍ତି । ଅନ୍ୟାନ୍ୟ ବରେଣ୍ୟ ବ୍ୟକ୍ତିଙ୍କଠାରୁ କେବଳ ସମ୍ମତି ପତ୍ରମାନ ଆସିଥିଲା ।

## ସଭାରେ କର୍ମକର୍ତ୍ତା ନିର୍ବାଚନ

'ସ୍ମୃତିମନ୍ଥନ' ଯେଉଁଭଳି ଆତ୍ମକଥା ନହେଁ । ଭଗବାନଙ୍କ ଜୀବନର ଅଂଗେ ଲିଭେଇଥିବା ଘଟଣାମାନ ଏହି ସ୍ମୃତି ସହିତ ଜଡ଼ିତ ହୋଇଥିବାରୁ ଏହା ଅବଶ୍ୟ ବେଳେ ବେଳେ ଆତ୍ମ-କଥା ସୁଲଭ ହୋଇଉଠେ । ଜଣେ ଲେଖକ ନିଜର ପ୍ରତିଭା ବର୍ଣ୍ଣନା କରି ପ୍ରତିଷ୍ଠା ଉଦ୍ଦେଶ୍ୟରେ ମିଥ୍ୟାକୁ ଭାଷା ଓ ବସ୍ତୁର ବେଶ ଦ୍ୱାରା ପାଠକ ସମାଜକୁ ବିଭ୍ରାନ୍ତ କରିବାର ପ୍ରୟାସକୁ ଖଣ୍ଡନ ନକଲେ ତାହା ମଧ୍ୟ ଏକ ଅସାଧୁକର କାର୍ଯ୍ୟରେ ପରିଣତ ହୁଏ । ( ଦୈନିକ 'ଆଶା'ରେ ସେହି ବର୍ଷ ପ୍ରକାଶିତ । )

୧୯୪୫ ମସିହାରେ ଶ୍ରୀ ହରେକୃଷ୍ଣ ମହତାବ, ଶ୍ରୀ କିଶୋରୀମୋହନ ଦ୍ୱିବେଦୀ ଓ ଅଚ୍ୟୁତାନନ୍ଦ ଦାସ ଯଥାକ୍ରମେ ସଭାପତି, ଉପ-ସଭାପତି ଓ ସମ୍ପାଦକ ରୂପେ ନିର୍ବାଚିତ ହେଲେ । ଏହା ବ୍ୟତୀତ ଏହି ସଭାରେ ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା, ଶ୍ରୀ ହରିଶ ଚନ୍ଦ୍ର ବଡ଼ାଳ, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ୰ ରାଧାକୃଷ୍ଣ ବଳ, ୰ ମୌଲଭୀ ଅସରଫ ଅଲ୍ଲୀ ଖାଁ, ଶ୍ରୀ ରମାକାନ୍ତ ସାହୁ ଓ ୰ ହରିବନ୍ଧୁ ଶତପଥୀ ଉପସ୍ଥିତ ଥିଲେ ।

ଦୁଃଖର କଥା ୧୯୪୫ ମସିହା ଜୁନ୍ ୧୦ ତାରିଖ ଦିନ କେବଳ ଦୁଇଜଣ ଉଦ୍ୟୋକ୍ତା ଓ ଅମରେଶ ଅଲିଙ୍କ ବ୍ୟତୀତ ଆଉମାନ ୨ ଜଣ ଉପସ୍ଥିତ ଥିଲେ । ପୁଣି ୧୬ । ୪ । ୪୬ ତାରିଖରେ ଏହି ସଭା ଟାଉନ ହଲରେ ଡକା ଯାଇଥିଲା । ଏଥିରେ ମୁକୁନ୍ଦ ପ୍ରସାଦ ଦାସ ସଭାପତିତ୍ୱ କରିଥିଲେ । ସେହି ସଭାରେ ନିଷ୍ପତ୍ତି କରାଗଲା ଯେ ସଂପାଦକ କଟକ ଯାଇ ହରିଶଚନ୍ଦ୍ର ସେନାପତିଙ୍କୁ ଏହି ଉଦ୍ୟାନଟିକୁ ବାଲେଶ୍ୱର ଜନସାଧାରଣଙ୍କ ହସ୍ତରେ ଅର୍ପଣ କରିବା ପାଇଁ ଅନୁରୋଧ କରିବେ । ଯଦି ସେ ସମ୍ମତ ନ ହଅନ୍ତି ତା'ହେଲେ ଜନସାଧାରଣଙ୍କ ଅର୍ଥରେ ବାଲେଶ୍ୱର ମ୍ୟୁନିସିପାଲିଟି ଆଇନ ଅନୁସାରେ ନିଜ ଦଖଲକୁ ନେଉ ।

ଗତ ସଭାର ସଭ୍ୟମାନେ ଉପସ୍ଥିତ ନରହି କେବଳ ପତ୍ରଦ୍ୱାରା ସମ୍ମତି ଜଣାଇବାରୁ ଶ୍ରୀ କଂଶୋରୀ ମୋହନ ଦ୍ୱିବେଦୀ, ଶ୍ରୀ ଅଚ୍ୟୁତାନନ୍ଦ ଦାସ, ଶ୍ରୀ ବିମଳଚନ୍ଦ୍ର ସେନାପତି ଯଥାକ୍ରମେ ସଭାପତି, ଉପ-ସଭାପତି ଓ କୋଷାଧ୍ୟକ୍ଷଭାବେ ମନୋନୀତ ହୋଇଥିଲେ । ସେହି ପରିପ୍ରେକ୍ଷୀରେ ଫକୀରମୋହନଙ୍କ ଶ୍ରାଦ୍ଧ ଦିବସ ଜୁନ୍ ମାସ ୩ ତାରିଖରେ ପାଳିତ ହେବାପାଇଁ ଏକ ଖସଡ଼ା ପ୍ରସ୍ତୁତ ହୋଇଥିଲା । ଦୈନିକ 'ସମାଜ'ରେ ତାହା ୧୧ । ୫ । ୪୬ ତାରିଖରେ ପ୍ରକାଶ ପାଇଥିଲା । ସେଦିନ ସଂପାଦକତ୍ୱ ବହନ କରିବା ଗୋଟିଏ ଭାରାକ୍ରାନ୍ତ ଜୀବନ ଉପରେ ପୁନଶ୍ଚ ଭାର ଲଦି ଦେଲା ଭଳି ଜଣାପଡ଼ିଲା ।

୬ ମୁକୁନ୍ଦ ପ୍ରସାଦ ଦାସଙ୍କ ଭାଷଣ "ଓଡ଼ିଆ ଜାତି ଆତ୍ମସମ୍ମାନତା ଗୁଡ଼ି ମହାନ୍ ଜାତୀୟ ଭାବରେ ଉଦ୍‌ବୁଦ୍ଧ ନହେଲେ ପୃଥିବୀ ଦରବାରକୁ କେତୋଟି ପୁସ୍ତକ ଦେଇ ଜାତିର ମର୍ଯ୍ୟାଦା ରକ୍ଷା କରିଯାଇ ନପାରେ ।" ସେହି ଭାଷଣ ମୋ ମନରେ ଆଣି ଦେଇଥିଲା ଧାରଣା । ସେଦିନ ଅନ୍ତତଃ ସଂପାଦକ ଏତିକି ମନେ କଲେ ଯେ ସଙ୍ଗୀତ, ନୃତ୍ୟ ଓ ସାହିତ୍ୟ ଏହି ତିନି ବିଷୟକୁ ଏକ ଢଙ୍ଗରେ ନ ରଖିଲେ ବାଲେଶ୍ୱରବାସୀ ବ୍ୟାସକବିଙ୍କ ବିଷୟ ଆସି ଶୁଣିବେ ନାହିଁ କିମ୍ବା ତାଙ୍କ ବିଷୟ ଜାଣିବାର ସୁଯୋଗ ନେବେ ନାହିଁ । ଏହି ପରିପ୍ରେକ୍ଷୀରେ ୧୯୪୬ ମସିହା ପାଇଁ କେତେଗୋଟି କାର୍ଯ୍ୟ ହାତକୁ ନିଆଯାଇଥିଲା ।

୧୯ । ୫ । ୪୭ ତାରିଖରୁ ୨୩ । ୫ । ୪୭ ତାରିଖ ଯାଏ ଏକ ରଚନା ପ୍ରତିଯୋଗିତା ଆରମ୍ଭ କରାଗଲା । ଦୈନିକ ସମାଜରେ ଏଥିପାଇଁ ଘୋଷଣାପତ୍ର ପ୍ରକାଶ ପାଇଥିଲା । ଆଜିର ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଡକ୍ଟର ବଂଶୀଧର ମହାନ୍ତି ସେହି ପ୍ରତିଯୋଗିତାରେ ପ୍ରଥମ ହେବାର ଗୌରବ ଅର୍ଜନ କରିଥିଲେ । ସଭାସ୍ଥଳରେ ସଙ୍ଗୀତ ପ୍ରତିଯୋଗିତା ହୋଇପାରିଲା ନାହିଁ । ମାତ୍ର କବିତା ଆବୃତ୍ତିରେ ଜଣେ ବାଲେଶ୍ୱରରୁ ଓ ଆଉ ଜଣେ କଟକରୁ ଯୋଗ ଦେଇଥିଲେ । ସରୋଜିନୀ ଚୌଧୁରୀ ( ଯେ କି ଫକୀରମୋହନଙ୍କ ନାତୁଣୀ ) ସେ କଟକରୁ ଏଠାକୁ ଆସିଥିଲେ । ସାଧାରଣ ଲୋକଙ୍କ ହାତରେ ଫକୀରମୋହନଙ୍କ ପୁସ୍ତକ ନଥିଲା । ସେଥିପାଇଁ ୧୭ ସେଟ୍ ପୁସ୍ତକ କଟକରୁ ଅଣାଯାଇ ଗ୍ରନ୍ଥମାନଙ୍କ ମଧ୍ୟରେ ବାଣ୍ଟିବାକୁ ହୋଇଥିଲା ।

## ଶାନ୍ତିକାନନ ଭିକ୍ଷା ପ୍ରତ୍ୟାଖ୍ୟାନ

ବ୍ୟାସକବି ତାଙ୍କର ବିପୁଳ ସମ୍ପତ୍ତିକୁ ଉପଯୁକ୍ତ ଭାବରେ ଖର୍ଚ୍ଚ ହେବାପାଇଁ ଇଚ୍ଛାପତ୍ରରେ ଯାହା ଲେଖିଯାଇଥିଲେ ତାଙ୍କ ମୃତ୍ୟୁ ପରେ ତାହା ହୋଇପାରିଲା ନାହିଁ । ଉଚ୍ଚ ଶିକ୍ଷିତ ପୁତ୍ର ଓ ପୁତ୍ରବଧୂ ଏମାନଙ୍କୁ ଅର୍ଥଲିପ୍ସା ଅତି ପ୍ରବଳଭାବରେ ଘାରିଥିଲା । ହରଣପ୍ରଭାଙ୍କ ସହିତ ବାରମ୍ବାର ଆଲୋଚନା କରି ବିଫଳ ହେଲା ପରେ ପରେ ଶାନ୍ତିକାନନକୁ ଏକୁଆର କରିବା ପାଇଁ ଯୋଜନା ଚାଲିଲା । ସେହି କ୍ଷୀଣାଙ୍ଗୀ, କୃଷ୍ଣକାୟାଯୁକ୍ତା ବଙ୍ଗାଳୀ ଭଦ୍ରମହିଳା ଅତି କର୍କଶ ସ୍ୱଭାବର ଥିଲେ ।

୧୯୪୭ ମସିହାରେ ହରିବନ୍ଧୁ ଶତପଥୀ ଓ ଶ୍ରୀ ରମେଶ ମହାନ୍ତି ଦୁଇଜଣ କଟକ ଯାଇଥିଲେ । ସେଠାରେ ଆୟୋଜିତ ଏକ ସଭାରେ ସେମାନେ ଫକୀରମୋହନଙ୍କୁ ଭାଷାରକ୍ଷକ ଓ ଓଡ଼ିଆ ଜାତିର ଗୌରବ ବୋଲି ଅଭିହିତ କରି ତାଙ୍କ ଶାନ୍ତିକାନନକୁ ଜନସାଧାରଣଙ୍କ ହସ୍ତରେ ଅର୍ପଣ କରିବା ପାଇଁ ସେନାପତିଙ୍କ ପୁତ୍ରବଧୂଙ୍କୁ ଅନୁରୋଧ କଲେ । ଏହି ସଭାରେ ଫକୀରମୋହନଙ୍କ ନାତୁଣୀ ମୀରା ଓ ମାୟା ମଧ୍ୟ ଉପସ୍ଥିତ ଥିଲେ । ତାଙ୍କ ପୁତ୍ରବଧୂଙ୍କଠାରୁ ଏମାନେ ଯାହା ଶୁଣିଲେ ସେଥିରେ ସେମାନେ ହତବାକ୍ ହୋଇଗଲେ । "ଆପନାର ଖୁବ୍ ବଲ୍ଲେନ୍ ।

ଫକୀରମୋହନ ଏକଟା ଲେଖକ, ଆବାର କବି ଛିଲେନ ? ଅରେ ବାବା, ତା'ର ଆବାର ସ୍ମୃତି । କୋଥାଏ ହିନ୍ଦୀତେ ଉନାର ବହି "ସମାଜ କଣ୍ଟକ୍" ବୋଲେ ଅନୁବାଦ ହୋଏଛେ କେଜାନେ ?" ଏତକ କହିବାକ୍ଷଣି ଆଉ ଶୁଣିବାର ଆବଶ୍ୟକତା ନଥିଲା । ସେହି ବାକ୍ୟ ୧୯୫୭ ମସିହା ଜୁନ୍ ୧୩ ତାରିଖରେ କଲେଜ ହଲରେ ପ୍ରକାଶ କରିବାରେ 'ଫକୀରମୋହନ ପରିକ୍ରମା'ରେ ତାହା ପ୍ରକାଶ ପାଇଛି ।

୧୯୪୯ ମସିହା ଜାନୁୟାରୀ ମାସରେ ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତିଙ୍କୁ ନିମନ୍ତ୍ରଣ କରାଯାଇଥିଲା । କଲେଜ ହଲରେ ଭାଷଣ ଶୁଣିବା ଉଦ୍ଦେଶ୍ୟରେ ବହୁଗୁଛବଗୁର୍ବୀ ଜନସାଧାରଣଙ୍କୁ ଅନୁରୋଧ କରାଯାଇଥାଏ । ମାତ୍ର ତାଙ୍କ ପରି ଜଣେ ସ୍ରଷ୍ଟାଙ୍କ ଭାଷଣ ଶୁଣିବା ପାଇଁ ବିଶେଷ ଲୋକ ନହେବାରୁ ସମ୍ପାଦକ ବକ୍ତାଙ୍କ ସମ୍ମାନ ରକ୍ଷା କରିବା ପାଇଁ କେତେଜଣ ହରିଜନ ଲୋକଙ୍କୁ ଲାଞ୍ଚ ଦେଇ ହଲକୁ ଅଣାଇ ଭାଷଣ ଶୁଣାଇ ଥିଲେ । ନୃତ୍ୟ ଗୀତ ନହେଲେ ସଭା ଜମେ ନାହିଁ । ଏ ଧାରଣା ନେଇ ୧୯୪୯ରୁ ୧୯୫୧ ସୁଦ୍ଧା ନିଖିଳ ଉତ୍କଳ ନୃତ୍ୟ, ସଙ୍ଗୀତ ଗୁରୁକଳା ସମ୍ମିଳନୀରେ ଭୂମିକା ଗ୍ରହଣ କରାଯାଇଥିଲା ।

## ଫକୀରମୋହନ ସ୍ମୃତି କମିଟି—ଏକ ନୂତନ ଯୁଗ—

ଏହି ସମୟଟି ସମଗ୍ର ଓଡ଼ିଶା ପାଇଁ ଏକ ଉନ୍ମାଦନାର ଯୁଗ । କେତେକ ଉନ୍ମାଦ ରାଜନୈତିକ ନେତାମାନେ ବନ୍ଦୀଶାଳାରୁ ଆସି ଆସନ ଦଖଲ କଲେଣି । ବିଭିନ୍ନ କାର୍ଯ୍ୟକ୍ରମମାନଙ୍କରେ କଟକରୁ ସାହିତ୍ୟ-ରଥୀମାନେ କେବଳ ନୁହନ୍ତି, ବଙ୍ଗୀୟ ସଙ୍ଗୀତ ଗାୟକ ଗାୟିକାମାନେ ମଧ୍ୟ ସ୍ମୃତି କମିଟିର ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗ ଦେବାକୁ ନିମନ୍ତ୍ରିତ ହେଲେଣି । ଉଦ୍ଦେଶ୍ୟ ଫକୀରମୋହନ ଲୋକଲୋଚନକୁ ଆସନ୍ତୁ । ୧୯୫୭ ମସିହା ଜାନୁୟାରୀ ମାସ ୧୪ ତାରିଖ ଦିନ ଫକୀରମୋହନଙ୍କ ଏକ ଅର୍ଦ୍ଧନଷ୍ଟ ଛବି ହାତରେ ଧରି ଛାତ୍ର ଶିକ୍ଷକ ଓ ଜନସାଧାରଣ ସହର ପରିକ୍ରମା କରିଥିଲେ । ଏମାନଙ୍କ ମଧ୍ୟରେ ଛାତ୍ରନେତା ଶ୍ୟାମସୁନ୍ଦର ମହାପାତ୍ର, ଦୈତାରୀ ଦାସ, ବିଜୟ କୁମାର ପାଣିଗ୍ରାହୀ, ଯାଦବେନ୍ଦ୍ର ପଟ୍ଟନାୟକ, ଶ୍ରୀ ଗଜେନ୍ଦ୍ର ଦାସ, ଅନ୍ନଦା ପ୍ରସାଦ ରକ୍ଷିତ, ଶ୍ରୀ ପ୍ରହ୍ଲାଦ ମହାନ୍ତି, ଶ୍ରୀ ସଦାନନ୍ଦ ଦାସ, ଶ୍ରୀ ଜିତେନ୍ଦ୍ର ନାଥ ଦାସ,

ଶ୍ରୀ ନରେନ୍ଦ୍ର ମିଶ୍ର ଇତ୍ୟାଦ ପ୍ରଧାନ । ଏହ୍ବ ଶୋଭାଯାତ୍ରା ବାଲେଶ୍ୱରବାସୀଙ୍କ ପ୍ରାଣରେ ଅପୂର୍ବ ଉନ୍ମାଦନା ଆଣି ଦେଇଥିଲା । ଏକ ଆଡ଼ମ୍ବରପୂର୍ଣ୍ଣ ପରିବେଶରେ ଶାନ୍ତିକାନନ ସେଦିନ ମୁଖରିତ ହୋଇ ଉଠିଥିଲା । ଫକୀରମୋହନ ସ୍ମୃତି କମିଟିକୁ ଯେଉଁ ବକ୍ତାମାନେ ନିମନ୍ତ୍ରିତ ହୋଇ ଆସିଛନ୍ତି ସେମାନେ ହେଲେ ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା, ଶ୍ରୀମତୀ ସରଳା ଦେବୀ, ଡଃ ନଟବର ସାମନ୍ତରାୟ, ଶ୍ରୀ ସୁରେନ୍ଦ୍ର ମହାନ୍ତି, ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ଡଃ ମାୟାଧର ମାନସିଂ, ପଣ୍ଡିତ ନୀଳକଣ୍ଠ ଦାଶ, ୰ ଚନ୍ଦ୍ରମଣି ଅଗ୍ରଓ୍ୱାଲ, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଶ୍ରୀ ଶ୍ୟାମସୁନ୍ଦର ମିଶ୍ର, ଶ୍ରୀ ପ୍ରହ୍ଲାଦ ପ୍ରଧାନ, ୰ ବାଳକୃଷ୍ଣ କର, ଶ୍ରୀ ପ୍ରାଣନାଥ ମହାନ୍ତି, ଡଃ ପ୍ରାଣକୃଷ୍ଣ ପରିଜା, ଡଃ ସୁମିତ୍ର ଚଣ୍ଡାଳି । ଏମାନଙ୍କ ଭାଷଣ ଶୁଣି ବାଲେଶ୍ୱରବାସୀଙ୍କର ନିଦ୍ରାଭଙ୍ଗ ହୋଇଥିଲା । ତାହା ଥିଲା ଏକାନ୍ତଭାବେ ସ୍ମୃତି କମିଟିର ଅବଦାନ । ଗ୍ରାହକମାନଙ୍କର ସହଯୋଗ ସ୍ମୃତି କମିଟି ସହ ନିବିଡ଼ରୁ ନିବିଡ଼ତର ହେଲା । ମ୍ୟୁନିସିପାଲିଟିଠାରେ ଟଙ୍କା ଜମା ଦେବା ବିଷୟରେ ତିନି ମୁଖ୍ୟ ଗ୍ରାହକ ଗୋଟିଏ ଏକାଙ୍କିକା ୧୯୪୨କୁ ଆଧାର କରି କଲେଜ ହଲରେ ପରିବେଷଣ କରିବାର ସିଦ୍ଧାନ୍ତ ନେଲେ । ସଙ୍ଗୀତ ପରିଚାଳନା ଦାୟିତ୍ୱ ଶ୍ରୀ ସୁକୁମାର ସାହୁଙ୍କ ଉପରେ ନ୍ୟସ୍ତ ରହିଲା । ଟିକେଟର ମୂଲ୍ୟ ୨ ଟଙ୍କା, ୧ ଟଙ୍କା ଓ ଅଠଅଣା ରଖାଯିବାର ସ୍ଥିର ହେଲା । 'ବାଲେଶ୍ୱର ସମ୍ବାଦ' ଶିରୋନାମାରେ ଏହା ଦୈନିକ 'ସମାଜ'ରେ ପ୍ରକାଶ ପାଇଲା । ୨୦ । ୫ । ୪୭ରେ ଏହି ନାଟକ ହେବ ଅଥଚ ଏଥିପାଇଁ କୌଣସି ବସି ଦିନ ଧାର୍ଯ୍ୟ ହୋଇନାହିଁ, ଏଭଳି ସମ୍ବାଦ ପଢ଼ି ସମ୍ପାଦକ ବିଚଳିତ ହୋଇପଡ଼ିବା ସ୍ୱାଭାବିକ । ବାଲେଶ୍ୱରର ଗ୍ରାହକଗ୍ରାହିକାମାନେ ଏଥିରେ ଅଂଶ ଗ୍ରହଣ କରୁଛନ୍ତି ବୋଲି ଖବର ପ୍ରକାଶ ପାଇଥିଲା । କଲିକତା ଓ କଟକରୁ ନୃତ୍ୟଶିଳ୍ପୀମାନେ ନିମନ୍ତ୍ରିତ ହୋଇ ଆସିବାର ଥିଲା । ଏପରି ଏକ ସମ୍ବାଦ କାଳ୍ପନିକ ଭାବି ସମ୍ପାଦକ ଶ୍ରୀ ଶ୍ୟାମସୁନ୍ଦର ମହାପାତ୍ରଙ୍କୁ ଏ ବିଷୟ ପଚାରିଲାରୁ ସେ ନେପଥ୍ୟରୁ ଭାବରେ କହିଲେ, ଏହାର ସତ୍ୟାସତ୍ୟ କିଏ ଅବା ଦେଖୁଛି, କିଛି ଟଙ୍କା ଆଦାୟ କରିବା ଆମର କାମ । ବଙ୍ଗାଳୀ ଭଉଣୀ କନ୍ୟାମାନେ ଏଥିରେ ସହଯୋଗ କରିବେ ସେଥିପାଇଁ ତାଙ୍କ ସଙ୍ଗୀତ ଶିକ୍ଷକ ଦାୟିତ୍ୱ ନେଇଛନ୍ତି ଓ ନୃତ୍ୟ ପରିବେଷଣ ପାଇଁ କହିଥିବାରୁ ଏହି ଖବର ଦିଆଯାଇଛି ।

ସ୍ଥିର ତିନିଜଣ ଏକ ସ୍ୱରରେ କହୁଥିବାରୁ ନିକଟ ଏ ନୂଆଳବାର ଘର ସମ୍ପାଦକ ବହନ କଲେ ଓ ସେଥିପାଇଁ ଆବଶ୍ୟକ ସ୍ୱୟମାନ ମଧ୍ୟ ସମ୍ପାଦକଙ୍କ ଦାୟିତ୍ୱରେ ଯୁବକମାନେ ଠେକ ଦେଲେ । ଅନଭିଜ୍ଞ ସମ୍ପାଦକଙ୍କୁ ସାହାଯ୍ୟ କରିବା ପାଇଁ ଦୁଇ ଜଣ ସମବୟସୀ ଓ କାର୍ଯ୍ୟଦକ୍ଷ ଯୁବକ ବନ୍ଧୁ ଶ୍ରୀ ଶିଶିର କୁମାର ପାଣିଗ୍ରାହୀ, ଶ୍ରୀ ବୈରାଗୀ ବେହେରା, ୰ ଚତୁର୍ଭୁଜ ନ ଅକୁଣ୍ଠ ଚିତ୍ତରେ ଆଗେଇ ଆସିଥିଲେ କଷ୍ଟ କଣ୍ଟ ଦାୟିତ୍ୱ ବହନ କରିବା ପାଇଁ ।

ସେତେବେଳେ ଜିଲ୍ଲା କଲେକ୍ଟର ଥିଲେ ୰ ଦୁର୍ଗାଚରଣ ଦାସ । ସେ ଜାତିପ୍ରୀତିରେ ଭରପୂର, ମାତ୍ର କର୍ତ୍ତବ୍ୟରେ ପର୍ବତ ପରି ଅଟଳ । ସଡ଼େଇକଳା, ଖରସୁଆଁ ମିଶ୍ରଣ ବେଳେ ସେ ନିଜର ଜାତିପ୍ରୀତି ଯେପରି ଦେଖାଇଥିଲେ ସେଭଳି ମହାତ୍ମା ଗାନ୍ଧୀଙ୍କର ଉତ୍କଳ ପଦଯାତ୍ରା ବେଳେ ତାଙ୍କ ଉପରେ କଟକଣା ଜାରି କରିବାକୁ ମଧ୍ୟ ଭୁଲି ନଥିଲେ । ନୀଳଗିରି ମିଶ୍ରଣ ସମୟରେ ତାଙ୍କର ଚତୁରତା ଯେ କୌଣସି ଐତିହାସିକ ନୀଳଗିରି ଗଡ଼ଜାତ ମିଶ୍ରଣ ଲେଖିଲାବେଳେ ମନେ ପକାଇବ । ସେ କଲେକ୍ଟର ଥିବା ସମୟରେ ୧୯୪୮ ମସିହା ଜାନୁୟାରୀ ୧୪ ତାରିଖ ୰ ବ୍ୟାସକବିଙ୍କ ଜନ୍ମଦିବସ ପାଳନ ଉପଲକ୍ଷେ ସ୍ମୃତି କମିଟିର ସମ୍ପାଦକ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ଦୁଇଦିନ ପାଇଁ ବାଲେଶ୍ୱର ଅଣାଇ ମୁକୁନ୍ଦ ପ୍ରସାଦ ଦାସଙ୍କ ଅତିଥି କରାଇଥିଲେ ।

ବାଲେଶ୍ୱରବାସୀଙ୍କର ଆତିଥ୍ୟ ତାଙ୍କୁ ଆଉ ୨ ଦିନ ରହିବାକୁ ଆନନ୍ଦ ଦେଇଥିଲା । ରାଜନୀତି ଆକାଶର ଚନ୍ଦ୍ରମା, ଗୋପବନ୍ଧୁଙ୍କର ସମବୟସୀ ପଣ୍ଡିତ ନୀଳକଣ୍ଠ ଏହି ବାଲେଶ୍ୱର ରହଣି ଅବସରରେ ଓଡ଼ିଆ ଜାତିକୁ ଯାହା ଦାନ କରିଗଲେ ସେଥିପାଇଁ ଏ ଜାତି ତାଙ୍କ ନିକଟରେ ଋଣୀ । ଦୁଇଖଣ୍ଡ ପୁସ୍ତକ ଏଠାରେ ବସି ସେ ଲେଖିଗଲେ । ତାହା ମଧ୍ୟରୁ ଗୋଟିଏ ହେଲା, "ଓଡ଼ିଆ ସାହିତ୍ୟର କ୍ରମ ପରିଣାମ ।" ଜାତି ସେତେବେଳେ ତାଙ୍କୁ ମୁରବୀ ସ୍ଥାନରେ ବସାଇ ଥିଲା । ଦୁର୍ଗାବାବୁ ତାଙ୍କର ଶିଷ୍ୟ । ସ୍ୱଇଚ୍ଛାରେ ଟଙ୍କା ସଂଗ୍ରହ କରି ତାଙ୍କର ନୂଆ ପୁସ୍ତକ ଦୁଇଟି ଛପାଇବା ପାଇଁ ସଂପାଦକଙ୍କ ହାତରେ ପଠାଇଥିଲେ ଗୁରୁଙ୍କ ନିକଟକୁ । ଜଗନ୍ନାଥ ଧର୍ମ ଓ ଶ୍ରୀ ଶ୍ରୀ ଚୈତନ୍ୟଙ୍କ ଓଡ଼ିଶା ଆଗମନ,

ପଞ୍ଚସଖା ଯୁଗର ସାହିତ୍ୟ ଓ ସାହିତ୍ୟର ଭବିଷ୍ୟତ ଏହି ଶୀର୍ଷକରେ ୪ଟି ବକ୍ତୃତା ସେ ଯୁକ୍ତ କମିଟି ତରଫରୁ ଆୟୋଜିତ ସଭାରେ ଦେଇଥିଲେ । ବନ୍ଧୁମାନେ ୪/୫ ଦିନ ଭିତରେ ୪ ଶହ ଅଠେଇଶ ଟଙ୍କା ସଂଗ୍ରହ କରି କଲେଜ ହଲରେ ଦର୍ଶକମାନଙ୍କର ବସିବାର ସ୍ଥାନ ମଧ୍ୟ ନିରୂପଣ କରି ଦେଇଥିଲେ । ସମ୍ପାଦକ ଯେତେବେଳେ କାର୍ଯ୍ୟ କଲାବେଳେ ବହୁ ଜଟିଳ ସମସ୍ୟା ସହଜରେ ସମାଧାନ କରି ପାରୁଥିଲେ ।



## ହୁତାଶନରେ ଜଳବିନ୍ଦୁ

ବ୍ୟାସଦେବଙ୍କ ବର୍ଣ୍ଣିତ ମହାଭାରତକୁ ତାଙ୍କର ପରିବାର ଓ ବଂଶଧରମାନଙ୍କର ଏକ ଇତିହାସ ବୋଲି ସମାଲୋଚକମାନେ କହିବାକୁ କୁଣ୍ଠାବୋଧ କରି ନାହାନ୍ତି । ଶେଷରେ କିନ୍ତୁ ଏହି ବ୍ୟକ୍ତିଗତ ଏବଂ ପାରିବାରିକ ଇତିହାସ ତାରି ଗୁଣାତ୍ମକ ଓ କଳାତ୍ମକ ଉତ୍କର୍ଷ ଯୋଗୁଁ ନିର୍ଭୟରେ ଗୋଟାଏ ଦେଶ ଓ ଜାତିର ସର୍ବଶ୍ରେଷ୍ଠ ଇତିହାସ ହୋଇ ରହିଗଲା ।

ତାତ୍ପର୍ଯ୍ୟ ଏହି ଯେ ଏ ଜାତିର ପାଠକଙ୍କ ବିଶ୍ୱାସ ଯେ ଯାହାକିଛି ଲିଖିତ ନଥିପତ୍ରରୁ ମିଳିବ ତାହାହିଁ ହେବ ଅଭ୍ରାନ୍ତ, ନତୁବା ଏହା ଏକ କିମ୍ବଦନ୍ତୀ କିମ୍ବା ସଂଯୋଜନା ବୋଲି ଗଣ୍ୟ କରି ନିଆଯାଇପାରିବ । ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ କଥାକାର, ଯୁଗସ୍ରଷ୍ଟା ଫକୀରମୋହନଙ୍କ ଜୀବନ ଚରିତରୁ ଜଣାଯାଏ ଯେ ସେ ଗୃହସ୍ଥ ଧର୍ମର ଏକ ନିପୁଣ ବ୍ୟାଖ୍ୟାକାର । ତାଙ୍କର ସ୍ୱହସ୍ତ ନିର୍ମିତ ଶାନ୍ତିକାନନର ଉଦ୍ଧାର ପାଇଁ ଏ ଜାତିକୁ କେତେ ପରିଶ୍ରମ କରିବାକୁ ପଡ଼ୁଛି ତାହାହିଁ ଯୁକ୍ତ ମନ୍ଥନ ପୁସ୍ତକର ପୃଷ୍ଠଭୂମି ।

୧୯୪୫ ମସିହା ଫକୀରମୋହନଙ୍କ ପୁତ୍ରବଧୂ ହରଣପ୍ରଭାଙ୍କୁ ବହୁବାର ସାକ୍ଷାତ୍ ପରେ ୮ ବଡ଼ ନାତୁଣୀ ମୀରା ପ୍ରତିଶ୍ରୁତି ଦେଇଥିଲେ ଯେ ତାଙ୍କର ଭଉଣୀମାନଙ୍କ ମଧ୍ୟରେ ସମ୍ପତ୍ତି ବଣ୍ଟନ ହେଲେ ସେ ବାଲେଶ୍ୱର ସମ୍ପତ୍ତିକୁ ଭାଗରେ ନେଇ ଶାନ୍ତିକାନନ ଓ ଫକୀରମୋହନଙ୍କ ବାସସ୍ଥାନକୁ ସେ ନିଜ ଖର୍ଚ୍ଚରେ ପ୍ରସ୍ତୁତ କରି ଏହିଠାରେ ବସବାସ କରିବେ ଓ ଶେଷରେ ତାହାକୁ ଜାତି ପାଇଁ ଦାନ କରିଦିବେ । କାରଣ ସେ ଥିଲେ ଅବିବାହିତା ।

ତାଙ୍କର କେଳେ ବାପାଙ୍କଠାରେହିଁ ସ୍ନେହ ଶ୍ରଦ୍ଧା ଥିବାର ପରିଲକ୍ଷିତ ହୁଏ । ପୁନଶ୍ଚ ଶତବାର୍ଷିକୀ ଗ୍ରନ୍ଥ, ପାଣ୍ଡୁଲିପିମାନ ମୁଦ୍ରଣ ଓ କେଳେବାପାଙ୍କର ଲିଖିତ ପୁସ୍ତକର ପୁନଃ ମୁଦ୍ରଣ ଦାୟିତ୍ୱ ମଧ୍ୟ ଗ୍ରହଣ କରିବାର ପ୍ରତିଶ୍ରୁତି ନେଇଥିଲେ । ମାତ୍ର ତାଙ୍କୁ ବିଦାୟ ନେବାକୁ ହେଲା ଘାତକ ହସ୍ତରେ । ତାଙ୍କର ଶବ ନମିଳିବା ଏକ ଆଶ୍ଚର୍ଯ୍ୟର ବିଷୟ । ସେ ନଦୀ ସ୍ରୋତରେ ଭାସି ଯାଇଥିଲେ, ଶବ ଉଦ୍ଧାର ହୋଇଥାନ୍ତା—ମାତ୍ର ତାଙ୍କ ମୃତ୍ୟୁ ରହସ୍ୟାବୃତ୍ତ କରି ରହିଗଲା । ସ୍ମୃତି କମିଟି ଘନ ଘନ ପ୍ରସ୍ତାବମାନ ଗ୍ରହଣ କରି ତାଙ୍କର ପରିବାରବର୍ଗଙ୍କୁ ପୁନଃ ପୁନଃ ସାକ୍ଷାତ୍ କରିବାରେ ମୋହନମୋହନଙ୍କ କନିଷ୍ଠ ଜାମାତା ୧-୭-୪୭ ମସିହାରେ ଏକ ପତ୍ର ସମ୍ପାଦକ ପାଖକୁ ପଠାଇଥିଲେ । ✽

ଉଦ୍ୟୋକ୍ତାଗଣ ସ୍ମୃତି ପଥରେ ଆଗେଇ ପଡ଼ିଥିଲେ ଅର୍ଥ ସଂଗ୍ରହ କରି ଶାନ୍ତକାନନକୁ ଏକୁଆର ପାଇଁ ନିବେଦନ କରିବାକୁ । ୨୦-୫-୪୭ ମସିହା ସକାଳ କଚେରୀ । ଯେଉଁ ଦୁଇଜଣ ଭଦ୍ରବ୍ୟକ୍ତିଙ୍କର କନ୍ୟାମାନେ ରବୀନ୍ଦ୍ର ସଙ୍ଗୀତରେ ବିଶ୍ୱକବିଙ୍କର ଜନ୍ମ ମୃତ୍ୟୁ ଦିବସମାନଙ୍କରେ ନୃତ୍ୟ, ସଙ୍ଗୀତ ପରିବେଷଣରେ ମୁଖ୍ୟ ଅଂଶ ଗ୍ରହଣ କରୁଥିଲେ, ସେ ଦୁହେଁ ହେଲେ ସୌରେନ ମିତ୍ର ଓ ଅନ୍ୟ ଜଣେ ଶ୍ରୀ ଅମଳ ବିଶ୍ୱାସ ।

ସ୍ମୃତି କମିଟିର କର୍ମକର୍ତ୍ତା କେତେଜଣ ସମ୍ପାଦକଙ୍କୁ ସାକ୍ଷାତ୍ କରି ସନ୍ଧ୍ୟାରେ କିପରି କାର୍ଯ୍ୟ ପରିଚାଳନା ହେବ, ଆଲୋଚନା କରିଥିଲେ । ସମ୍ପାଦକ ସେମାନଙ୍କୁ ସମସ୍ତ ସୁବିଧା କରାଇ ଦେବାର ପ୍ରତିଶ୍ରୁତି ଦେଇ ଭଦ୍ରବ୍ୟକ୍ତିଙ୍କର କନ୍ୟାମାନେ ନୃତ୍ୟ, ସଙ୍ଗୀତରେ ଅଂଶ ଗ୍ରହଣ କରୁଥିବାର ଶୁଣି ସେହି ଗର୍ବୀତ ପିତାଙ୍କ ବିନମ୍ର ଭାବରେ ପଚାରି ବୁଝିବାକୁ ଚେଷ୍ଟା କଲେ ଯେ କଚେରୀଠାରୁ କନ୍ୟାମାନେ ରିକ୍ସାରେ ଆସିବେ କିମ୍ବା ଚାଲି ଆସିବେ । ଏତିକ ଜାଣିବାର ଚେଷ୍ଟା ସେଦିନ କରି ନଥିଲେ, ଆଜି ଏ ଲେଖାର ପଙ୍କ୍ତିମାନ ଭିନ୍ନ ରୂପ ନେଇଥାନ୍ତା ।

ସେ ଏକ ଜ୍ୱାଳାମୟୀ ମୁହୂର୍ତ୍ତ ଥିଲା ସମ୍ପାଦକଙ୍କ ପକ୍ଷରେ । ମନୁଷ୍ୟ ଜୀବନରେ ଏପରି ଗୋଟିଏ ଗୋଟିଏ ଧକ୍କା ଆସେ, ସେ ବ୍ୟଥାକୁ

✽ ପରିଶିଷ୍ଟ ଦ୍ରଷ୍ଟବ୍ୟ ।

ନିବାରଣ ପାଇଁ ଓ ସୁସ୍ଥ ରୂପରେ ରଖି ଯିବାପାଇଁ ଓ ଦୁଃଖ ଲାଘବ କରିବା ପାଇଁ ଯାହା ଜୀବନ ବାକ୍ୟଛଳରେ କହି ରଖିଥାଏ ବନ୍ଧୁମାନଙ୍କ-ଠାରେ ପ୍ରତ୍ୟେକଙ୍କ ଜୀବନରେ ଏହିପରି ଗୋଟିଏ ଗୋଟିଏ ଅଲଂଘନୀୟ ଘଟଣା ଘଟିଥାଏ ।

ସେଦିନ ସେହି ମୁହୂର୍ତ୍ତଟି ସୁସ୍ଥ କମିଟିର ସମ୍ପାଦକ ପକ୍ଷରେ ଗୋଟିଏ ଅଲଂଘନୀୟ ଭବିତବ୍ୟରେ ଗଣ୍ୟ । ହାତଟଣା ରିକ୍ସା କେଇଟଣ୍ଡମାତ୍ର ବାଲେଶ୍ୱରରେ ଥାଏ । ମଣିଷ ଦୁଇ ହାତରେ ଟାଣି ଟାଣି ରିକ୍ସାରେ ବସିଥିବା ଲୋକକୁ ବୋହିନିଏ ସେଥିପର । ସନ୍ଧ୍ୟାରେ ସେ ବୃଦ୍ଧ ବନ୍ଧୁଙ୍କର କନ୍ୟାମାନେ କାପର ସମ୍ମାନର ଧନ୍ଦ କଲେଜ ହଲକୁ ଅଧିବେ କେତକ ପଚାରିବାରେ ସେ ଯେଉଁ ଉତ୍ତର ଦେଇଥିଲେ ସେତକ— "କି ଏକଟା ଫକୀରମୋହନ କରଛ ? ତାକେ ଆମାର ମେଁ ଯାବେ ନାଚତେ—ଗାଇତେ । ଆମି ଅମାଲ କେ ଜିଜ୍ଞାସା କରଲାମ୍ । ସେ ବୋଲଲ କି ଏକଟା ଫକୀରମୋହନ ହଚ୍ଛେ ଆବାର ତାତେ ଟିକେଟ ବିକ୍ରୀ କରାହଚ୍ଛେ, ସେଖାନେ ଆମାଦେର ମେୟେ ଯାବେ ନାଚତେ ।"

ସେଦିନ ସେହି ମୁହୂର୍ତ୍ତ ହବା ପ୍ରାୟ ୧୦ ଘଣ୍ଟା ମେ ମାସ । ସୂର୍ଯ୍ୟକିରଣରେ ପ୍ରଖରତା । ପୁଣି ଅନ୍ୟକିଛି ବାଲ୍ଲ ପନ୍ଥା ନାହିଁ । ସମାଜରେ ଲେଖା, "କଟକ, କଲିକତାରୁ ନୃତ୍ୟ, ସଙ୍ଗୀତ ଶିଳ୍ପୀମାନେ ନିମନ୍ତ୍ରିତ ହୋଇ ଆସୁଅଛନ୍ତି ।" ନୂଆ କରି ବାଲେଶ୍ୱରବାସୀଙ୍କ ସମ୍ମୁଖରେ ହାତ ପତେଇ ଏକାଙ୍କିକା ନାଟକ ସହ ଗୀତ, ନାଚ ଦେଖାଇବାର ପ୍ରତିଶ୍ରୁତି ଆବଦ୍ଧ ସମ୍ପାଦକଙ୍କୁ ସେଦିନ ବିବ୍ରତ କରି ପକାଇଲା ସେ ଭାବନା ।

ବନ୍ଧୁମାନଙ୍କୁ ପରାମର୍ଶ କରିବା ପୂର୍ବରୁ ସମ୍ପାଦକ ନିକଟରେ ଥିବା ସମବ୍ୟବସାୟୀ ବନ୍ଧୁ ମଧୁସୂଦନ ରାଏଙ୍କ ସହିତ ପରାମର୍ଶ କରି ସେ ବୃଦ୍ଧଙ୍କୁ ବୁଝାଇବାକୁ ଦେଲେ, ମାତ୍ର କିଛି ଫଳ ହେଲା ନାହିଁ । ଗୁରୁବନ୍ଧୁ ସୁସ୍ଥ କମିଟିର ପରମ ହିତାକାଂକ୍ଷୀ ବନ୍ଧୁମାନଙ୍କ ସହ ପରାମର୍ଶ କରି ସମ୍ପାଦକ ସେଦିନ ଯେଉଁ ପଦକ୍ଷେପ ନେବାର ପ୍ରତିଜ୍ଞାବଦ୍ଧ ହେଲେ, ତାହା ଆଜିର ଜୀବନବୃତ୍ତିରେ ଘୂରିବୁଲୁଥିବା ବୁଦ୍ଧିଜୀବୀ, ଲେଖକ, ଶିକ୍ଷାବିତ୍, ସମାଜ ସେବକ ଓ ସାହିତ୍ୟିକମାନଙ୍କୁ ବୁଝାଇବା ସମ୍ଭବ ନୁହେଁ ।

ସେଦିନ ସମ୍ପାଦକ ସେ ବ୍ୟକ୍ତିର ଆଚରଣରେ କ୍ଷୁବ୍ଧ ହେଲେ ଲକ୍ଷ୍ୟ ଓ ବିରାଟ ଉଦ୍ଦେଶ୍ୟ ଏହି ସାମାନ୍ୟ ତାଚ୍ଛଲ୍ୟରେ ଦ୍ରବୀଭୂତ ହୋଇନଥିଲା ।

ସେଦିନର ସେ ଆକ୍ରମଣ ମନେ ହେଲା ଯେପରି ଓଡ଼ିଆ ଜାତି ଉପରେ ଏହା ଆକ୍ରମଣ । ଜାତିର ପ୍ରୀତି ବହ୍ନିକୁ ବୁକୁରେ ରଖିଥିବା ଲୋକ ଜଣେ ସାମାନ୍ୟ ଅଜ୍ଞ ଲୋକର ପରିହାସର ଆସ୍ପର୍ଦ୍ଧାକୁ ବରଦାସ୍ତ କରିବା ସମ୍ଭବ ନୁହେଁ । ଜାତିର ଅର୍ଥନୈତିକ ମେରୁଦଣ୍ଡ ଲୁଣ୍ଠିତ ହୋଇଥିଲେ ମଧ୍ୟ ଜାତିର ଜାଗରଣ ପାଇଁ ଭସ୍ମର ଆବର୍ତ୍ତ ମଧ୍ୟରୁ ନିର୍ଘୋଷିତା ଜନ୍ମ ନେଉ ସାରିଲାଣି । ସୁତରାଂ ମତାନ୍ଧତାକୁ ଭ୍ରୂକ୍ଷେପ କରି ଏହାର ସମାଧାନ ପଥ ନିର୍ଣ୍ଣୟ ନିମନ୍ତେ ଆଗଭର ହୋଇ ଚଢ଼ିବା ପାଇଁ ପ୍ରସ୍ତୁତ ହେଲେ ସମ୍ପାଦକ । ସେଦିନର ପ୍ରସ୍ତୁତିକୁ ନିଶ୍ଚୟ ଅହଙ୍କାରସ୍ଫୀତ ଅଭିମାନ କୁହାଯାଇପାରେ ।

ଗୋଟାଏ ଐତିହାସିକ ଜାତିର ରକ୍ଷକ ପ୍ରତି ତାଚ୍ଛଲ୍ୟତା ! କାଳ ଘୂର୍ଣ୍ଣିକୁ ବଦଳାଇବାର ଯୋଗ୍ୟତା ତାର ଦାୟାଦ ଉପରେ । ସେଥିପାଇଁ ଲୋଡ଼ା ଥିଲା ସାହସ, ସେଥିପାଇଁ ଲୋଡ଼ା ଥିଲା ଧୈର୍ଯ୍ୟ । ସେଦିନ ମନେ ହେଉଥିଲା ଯେପରି ଘୋର ଘୂର୍ଣ୍ଣିବାତ୍ୟା ଆସେ, ସେଠାରେ ନାବିକ ସାହସ ଅବଲମ୍ବନପୂର୍ବକ ମଙ୍ଗ ଧରିବା ଉଚିତ, ତେବେ ତ ତାକୁ ନାବିକ କୁହାଯିବ ।

ପଣ୍ଡିତ କାନ୍ତିଲାଲ ଭଟ୍ଟାଚାର୍ଯ୍ୟ କଥା ଫକୀରମୋହନ ଆତ୍ମଚରିତରେ "ଓଡ଼ିଆ ଏକଟା ସ୍ୱତନ୍ତ୍ର ଭାଷା ନୟ" ସମ୍ପାଦକ ଚକ୍ଷୁ ସମ୍ମୁଖରେ ଜୁଳୁଜୁଳିଆ ପୋକ ଭଳି ଖେଳି ଯାଉଥିଲା ସେତେବେଳେ ।

ସେଦିନ ଛାତ୍ରମାନେ ମଧ୍ୟ ବିବ୍ରତ, ଯେଉଁ ଶିକ୍ଷକ ଛାତ୍ରୀମାନଙ୍କର ଗୁରୁ ସେ ମଧ୍ୟ କିଂକର୍ତ୍ତବ୍ୟବିମୂଢ଼ । ସମ୍ପାଦକଙ୍କୁ ସେଦିନର କର୍ତ୍ତବ୍ୟ, ଅଗ୍ନିପରୀକ୍ଷାକୁ ଟାଣି ନେଇଥିଲା । ସେ କୁତ୍ସିତ ଅହଙ୍କାରକୁ ପ୍ରତ୍ୟାଖ୍ୟାନ କରିବା ଭଳି କର୍ତ୍ତବ୍ୟ ସ୍ଥିର କରି ଏହି ଗ୍ଳାନିକର ପରିସ୍ଥିତିରେ ସେଦିନ କଠୋର ହୋଇ ପଡ଼ିଥିଲେ । ଗୃହହରା ଅବୋଧ ବାଳକ ପରି ସେହି ଅଗ୍ନିଦଗ୍ଧ ରାସ୍ତାରେ ସାଇକେଲ ଘେନି ବାହାରିବାବେଳେ ସାଇକେଲର

ସମସ୍ତ ଶରୀର ଯେପରି କମାରଶାଳର ଅଗ୍ନିରୁ ବାହାରି ପଡ଼ୁଛି ବୋଲି ମନେ ହେଉଥିଲା ।

ମଧ୍ୟାହ୍ନ ସୂର୍ଯ୍ୟର ଉତ୍ତପ୍ତ କିରଣ ଓ ବର୍ଷଣ୍ଟି, ନିର୍ଜନତା ମଧ୍ୟରେ ସେ ମାଳଗିରିର ରାଜଦରବାର ଆଡ଼କୁ ମୁହାଁଇଲେ । ଏକ ଅଯତ୍ନ ବର୍ଦ୍ଧିତ ରାଶି ଦ୍ୱାରା ପରିପୂର୍ଣ୍ଣ ଶାନ୍ତକାନନ ଉଦ୍ଧାର ଉଦ୍ଦେଶ୍ୟରେ ଯେଉଁ ପ୍ରତିଶ୍ରୁତି ଦିଆଯାଇ ଅର୍ଥ ସଂଗ୍ରହ କରାଯାଇଛି, ତାହା ପୂରଣ କରିବା ପାଇଁ ସେହି ଦୁରଣାଗ୍ରସ୍ତ ଅଗ୍ରଣୀଙ୍କୁ ଆଜି ଆଉ କଳ୍ପନା କରାଯାଇ ନପାରେ । ରାଜଦରବାରରେ ଯେଉଁ ଓଡ଼ିଆ ସଂସ୍କୃତି ରକ୍ଷାକାରୀ ରାଜା, ସିଂହାସନରୁ ଫେରିଲେଣି ।

ନିର୍ଦ୍ଦିଷ୍ଟ ଘଟଣା ସମୂହରୁ ଯେଉଁ ସତ୍ୟ ଅବତାରଣା କରାଯାଏ ତାହା ଏକ ଦର୍ପଣ ପରି । ଲେଖାର ଭଙ୍ଗୀ କେତେକାଂଶରେ ବିକୃତ କରି ଦେଇପାରେ, ତାହା କୁତ୍ସିତ ଭାବରେ ପ୍ରକାଶିତ ହୋଇପାରେ । ମାତ୍ର ସତ୍ୟ ଘଟଣାକୁ କବିତାରେ ଲେଖିଥିଲେ ତାହା ଯେତେ ବିକୃତ ହେଲେବି ତାହାକୁ ସୁନ୍ଦର କରି ଛିଡ଼ା କରାଇଥାଆନ୍ତି । ମାତ୍ର କବିତାରେ ଲେଖା ହେଲା ନାହିଁ ।

୧୪ ମାଇଲ ରାସ୍ତା ଦିବା ଦୁଇ ଘଣ୍ଟା ସମୟ ସମ୍ପାଦକର ରାଜଦ୍ୱାରରେ ପ୍ରବେଶ । ମନରେ ନବୀନ ଭାବବୋଧ, କଳାପ୍ରେମୀ ରାଜା କିଶୋର ଚନ୍ଦ୍ର, ନିର୍ଦ୍ଦିଷ୍ଟ ହରିଚନ୍ଦନ, ସମ୍ପାଦକର ଚିନ୍ତାନ୍ତରେ ବନ୍ଧୁ କ୍ଷତିଗ୍ରସ୍ତ ହୋଇଥିବା ରାଜନୈତିକ ଆନ୍ଦୋଳନ ସମୟରେ ନିଶ୍ଚୟ ଅପାସୋରି ଥିବ । କିନ୍ତୁ କଳା ବିଷୟରେ ତାଙ୍କର ଏପରି ସ୍ନେହ ଓ ନିଷ୍ଠା ତାହାକୁ ସେ ତ୍ୟାଗ କରି ନଥିବାର ଧାରଣା ହେଲ ସମ୍ପାଦକ ବିନମ୍ରଭାବରେ ସମସ୍ତ ବିଷୟ ରାଜପ୍ରାସାଦରେ ରାଜାଙ୍କୁ ଜଣାଇଲେ । ରାଜପରିବାରପକ୍ଷେ ସେ ସମୟଟି ଥିଲା ଏକ ଦୁର୍ଦ୍ଦିନ । ତାଙ୍କର ରାଜ୍ୟ ରହିବ କି ନାହିଁ । ସେ ବିଷୟରେ ସେ ସନ୍ଦିହାନ । ସେତେବେଳେ କେବଳ ମାଳଗିରିରୁ କେତେଜଣ କଳାକାର ଓ ଓଡ଼ିଆରେ ଗୀତ, ଚମ୍ପୂ, ଓଡ଼ିଶୀ ଶିକ୍ଷା କରିଥିବା କେତେଜଣ କନ୍ୟାଙ୍କ ସହିତ ସଙ୍ଗୀତଜ୍ଞ ଶ୍ରୀ ରାମଚନ୍ଦ୍ର ମହାପାତ୍ର, ଶ୍ରୀ ଅଭୟ ଚରଣ ଦାସ ସଙ୍ଗରେ ୮ ଉଦୟନାଥ

ସଂରବର ଓ ତାଙ୍କର କନ୍ୟା ଶ୍ରୀମତୀ ଆଶାଲତା ଜେମା ଦେଈ, ୰ କନକଲତା ଜେମା ଦେଈ, ଶ୍ରୀ ମଦନମୋହନ ଦାସଙ୍କ କନ୍ୟା ଶ୍ରୀମତୀ ସୁକ୍ଷମାରାଣୀ ଦାସ ଓ ଅନ୍ୟ ଏକ କନ୍ୟା ସହ ରାଜାନୁଗ୍ରହରୁ ମିଳିଥିବା ମୋଟର ଯୋଗେ ସଙ୍ଗେ ସଙ୍ଗେ ବାଦ୍ୟଯନ୍ତ୍ର ସହ ବାଲେଶ୍ବର ବାହାରି ପଡ଼ିଲେ । ରକ୍ଷଣାବେକ୍ଷଣ ଭାର ସମ୍ପାଦକଙ୍କ ଉପରେହିଁ ନ୍ୟସ୍ତ ଥିଲା । ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ସମ୍ପାଦକ ସେମାନଙ୍କୁ ବାଲେଶ୍ବରରେ ରଖାଇବାର ବନ୍ଦୋବସ୍ତ କରି ସାରିଥିଲେ । ସେଦିନର ଘଟଣା ସହିତ ଯେଉଁମାନେ ଜଡ଼ିତ ସେମାନଙ୍କ ମଧ୍ୟରୁ ବହୁଲୋକ ଏବେବି ଜୀବିତ । ଶ୍ରୀମତୀ ଆଶାଲତା ଜେମା ଦେଈ ଆଜି ଓଡ଼ିଶାରେ ସଙ୍ଗୀତ ଗାୟିକାମାନଙ୍କ ମଧ୍ୟରେ ଅନ୍ୟତମା ।

ବିସ୍ମୃତି କାଳ ଆଜି ସେ ଦୃଶ୍ୟକୁ ନୀଳିମାକ କରି ବିସ୍ମୃତି ପଥକୁ ଫିଙ୍ଗି ଦେଇଛି । ସେଦିନ କଲେଜ ହଲ ଶୁଣିଥିଲା କପରି ଓଡ଼ିଶୀ, ଛାନ୍ଦ, ଚମ୍ପୂର ମାଧୁରୀ । ପୁନଶ୍ଚ ତହିଁଆର ଦିନ ଅନ୍ୟ ଏକ ଆସର ବସାଇବାର ଅନୁରୋଧ କରିଥିଲେ ବାଲେଶ୍ବରବାସୀ । ଜୀବନରେ ଏପରି ଅନେକ ଘଟଣା ଘଟେ, ଯାହାର କୌଣସି କାରଣ ମଧ୍ୟ ଖୋଜିଲେ ମିଳେ ନାହିଁ । ସେଗୁଡ଼ିକ ଯେପରି ଅପ୍ରତ୍ୟାଶିତ, ସେହିପରି ବିସ୍ମୟ ।

ସେଦିନର ସେହି ସଙ୍ଗୀତ ଶେଷ ପରେ ୰ ମଧୁସୂଦନ ରାଏ, ଶ୍ରୀ ରାଧାନାନନ୍ଦ ପାଣିଗ୍ରାହୀ, ତାଙ୍କର ପତ୍ନୀ ଶ୍ରୀମତୀ ରମା ପାଣିଗ୍ରାହୀମାନେ ସମ୍ପାଦକଙ୍କୁ ଅନୁରୋଧ କରିଥିଲେ ବାଲେଶ୍ବରରେ ଶ୍ରୀ ରାମଚନ୍ଦ୍ର ମହାପାତ୍ରଙ୍କୁ ରଖାଇଲେ ପିଲାମାନେ ଏଠାରେ ଓଡ଼ିଶୀ, ଛାନ୍ଦ, ଚମ୍ପୂ, ଜଣାଣ, ଭଜନ ମାନ ଶିକ୍ଷା ପାଇ ପାରିବେ । ସେମାନଙ୍କ ଅନୁରୋଧ ଅନୁଯାୟୀ କାର୍ଯ୍ୟ କରାଗଲା । ବାଲେଶ୍ବରରେ ରଘୁନାଥ ସଙ୍ଗୀତର ପ୍ରଭାବ କମିଲେ । ପରେ ପରେ ଶ୍ରୀ ମହାପାତ୍ର ତାଙ୍କର ଜୀବିକା ଅର୍ଜନର ଚିନ୍ତା ଘେନି ଏହିଠାରେ କାଳ କଟାଉ ଅଛନ୍ତି ।



 

ସ୍ମୃତି ତରଙ୍ଗ—

# ଶାନ୍ତକାନନ ଉଦ୍ଧାର ପ୍ରସ୍ତାବ

ସ୍ମୃତି କମିଟିର କର୍ତ୍ତବ୍ୟ କେବଳ ଫକୀରମୋହନଙ୍କ ସାହିତ୍ୟ ଚର୍ଚ୍ଚାର ଗଣ୍ଡି ମଧ୍ୟରେ ଆବଦ୍ଧ ନଥିଲି ଏହାର ସୁନାମ ପାଇଁ ରବୀନ୍ଦ୍ର ଜୟନ୍ତୀ ଓ ତାଙ୍କର ମୃତ୍ୟୁ ଦିବସମାନ ନିଷ୍ଠାର ସହିତ ପାଳନ କରିବାରେ ବ୍ରତୀ ହେଲା । ଧୀରେ ଧୀରେ ବଙ୍ଗୀୟ କଳାକାରମାନେ ମଧ୍ୟ ନିମନ୍ତ୍ରଣ ରକ୍ଷି ଘନ ଘନ ଏହି ଫକୀରମୋହନ ସ୍ମୃତି କମିଟିକୁ ଆସି ନିଜର ବକ୍ତୃତା, ସଂଗୀତ ନୃତ୍ୟମାନ ପରିବେଷଣ କରିଯାଇଛନ୍ତି ।

ଗଦ୍ୟ ସାହିତ୍ୟର ସେନାପତି ଖାଣ୍ଟି ଘରୋଇ ଭାଷାରେ କି ପ୍ରଭାବ ସୃଷ୍ଟି କରିଥିଲେ ତାହା ବର୍ତ୍ତମାନ ଯୁଗର ଯେ କୌଣସି ଉପନ୍ୟାସ ବା କ୍ଷୁଦ୍ରଗଳ୍ପ ପଢ଼ିଲେ ଜାଣିହୁଏ । ସେନାପତିଙ୍କ ସାହିତ୍ୟ ଆଲୋଚନା ଓ ବିଭିନ୍ନ ସମୟରେ ଜନ୍ମ ମୃତ୍ୟୁ ଦିବସକୁ ଉପଲକ୍ଷ୍ୟ କରି ସଭାମାନ ଡକାଯାଇ ବିଭିନ୍ନ ବିଷୟମାନ ଆଲୋଚନା ହେଉଥିଲା । ବାଲେଶ୍ୱରର ସ୍ମୃତି କମିଟି ଥିଲା ତାହାର ପ୍ରାଣକେନ୍ଦ୍ର । ବଙ୍ଗୀୟ ବନ୍ଧୁମାନେ ମଧ୍ୟ ସ୍ମୃତି କମିଟି ଉପରେ ସନ୍ତୁଷ୍ଟ ଥିଲେ ! କାରଣ ତାଙ୍କୁ ଆଉ ସେଥିପାଇଁ କଷ୍ଟ କରିବାକୁ ହେଲ ନାହିଁ । ରବୀନ୍ଦ୍ର ଜୟନ୍ତୀ ଓ ମୃତ୍ୟୁ ବାର୍ଷିକୀରେ ବହୁ ବକ୍ତା ଆସି ରବୀନ୍ଦ୍ରଙ୍କ ଉପରେ ଏଭଳି ସୁନ୍ଦର ବକ୍ତୃତା ଦେଉଥିଲେ ଯେ ତାହା ବାଲେଶ୍ୱରର ବଙ୍ଗୀୟ ଭଦ୍ରଲୋକମାନେ ଶୁଣି ସ୍ମୃତି କମିଟିକୁ ନିଜର ବୋଲି ମନେ କରୁଥିଲେ । ୮ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଥରେ ସମ୍ବଲପୁରରୁ ଆସି ରବୀନ୍ଦ୍ରଙ୍କ ଉପରେ ଯେଉଁ ଭାଷଣ ଦେଇଥିଲେ ତାହା ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଥିଲା ।

ବାଲେଶ୍ୱର କଲେଜରେ ସେତେବେଳେ ବି. ଏ. ଶ୍ରେଣୀ ଖୋଲି ଗଲାଣି । ବହୁଗୁଣ ଫକୀରମୋହନଙ୍କ ଉପରେ ବହୁ ଦିଗରୁ

ଆଲୋକସମ୍ପାତ କରି ଆଲୋଚନାରେ ଭାଗ ନେଲେଣି । ଫକୀରମୋହନ ତ୍ରିବେଦୀଙ୍କ ସଭାପତିତ୍ୱରେ କଲେଜ ହଲରେ ଏକ ସଭା ଅନୁଷ୍ଠିତ ହୋଇଥିଲା । ତାହା ୩ । ୬ । ୪୭ରେ ଅନୁଷ୍ଠିତ ହୋଇଥିଲା ଓ ଏଥିରେ କେତୋଟି ପ୍ରସ୍ତାବ ଗୃହୀତ ହୋଇଥିଲା । ପ୍ରଥମ ପ୍ରସ୍ତାବମୂଳେ ହରିଶପ୍ରଭା ସେନାପତିଙ୍କୁ ଶାନ୍ତିକାନନ ବାଲେଶ୍ୱରବାସୀଙ୍କ ହସ୍ତରେ ଅର୍ପଣ କରିବା ନିମନ୍ତେ ନିବେଦନ କରାଯାଇଥିଲା । ଦ୍ୱିତୀୟ ପ୍ରସ୍ତାବରେ ଉଲ୍ଲେଖ ଥିଲା ଯେ ଯଦି ହରିଶପ୍ରଭା ପ୍ରସ୍ତାବ ପାଇ ଉପଯୁକ୍ତ ସମୟରେ ଶାନ୍ତିକାନନକୁ ଜନସାଧାରଣଙ୍କ ହସ୍ତରେ ଅର୍ପଣ ନକରନ୍ତି ତାହେଲେ ବାଲେଶ୍ୱର ମ୍ୟୁନିସିପାଲଟିକୁ ଏହି ଶାନ୍ତି କାନନ ଏକୁଆର ପାଇଁ ଅନୁରୋଧ କରାଯିବ । ତୃତୀୟ ପ୍ରସ୍ତାବଟି ଥିଲା ଫକୀରମୋହନଙ୍କ ଜନ୍ମସ୍ଥାନରେ ବାଲେଶ୍ୱର କଲେଜଟି ଥିବାରୁ ତାହାକୁ ଫକୀରମୋହନ କଲେଜ ନାମରେ ନାମିତ କରାଯାଉ । ଏହି ପ୍ରସ୍ତାବଟି ବାଲେଶ୍ୱରର ଦୁଇରଥୀ ଯଥାକ୍ରମେ ୰ ମୁକୁନ୍ଦ ପ୍ରସାଦ ଦାସ ଓ ୰ ଗୁରୁଚନ୍ଦ୍ର ରାଏଙ୍କ ଦ୍ୱାରା ଆଗତ ଏବଂ ସମର୍ଥିତ ହୋଇଥିଲା ଏହାକୁ ତୁରନ୍ତ କାର୍ଯ୍ୟକାରୀ କରିବା ପାଇଁ ସରକାରଙ୍କୁ ମଧ୍ୟ ଅନୁରୋଧ କରାଯାଇଥିଲା । ସ୍ମୃତି କମିଟିର ଘନ ଗୃହଦ୍ୱାରା ୧୯୪୯ ମସିହାରେ ଫକୀରମୋହନ କଲେଜ ନାମରେ ନାମିତ ହେଲା ।

## ରଣିକା ମୁଖରେ ସତୀତ୍ୱର ଉପାଖ୍ୟାନ

ବାଲେଶ୍ୱରର ତଦାନୀନ୍ତନ ପୌରପାଳ ବାଲେଶ୍ୱର ମ୍ୟୁନିସିପାଲଟିର ତଥା ବାଲେଶ୍ୱର ଅଧିବାସୀଙ୍କର କର୍ଣ୍ଣଧାର କହିଲେ ଚଳେ । ସଭାପତିଙ୍କର ୩-୬-୪୭ ପ୍ରସ୍ତାବ ଓ ୨୦-୫-୪୭ ପ୍ରସ୍ତାବ ମୂଳେ ନାଟକ ପରିବେଷଣରୁ ଉପାର୍ଜିତ ଟଙ୍କା ପୌରପାଳଙ୍କ ଜମା ଦେବା ପୂର୍ବରୁ ହରିଶପ୍ରଭା ସେନାପତିଙ୍କ ସହ ଆଉଥରେ ସାକ୍ଷାତ କରିବାର ଦୁର୍ଭାଗ୍ୟ ସ୍ମୃତି କମିଟି ସଭ୍ୟମାନଙ୍କର ଘଟିଥିଲା । ଶିକ୍ଷାମନ୍ତ୍ରୀ ୰ ଲିଙ୍ଗରାଜ ମିଶ୍ରଙ୍କର ଇଚ୍ଛାପୂରଣ ପାଇଁ କଟକ ଯାଇ ଯାହା ଶୁଣାଗଲା—"ମୋହିନୀବାବୁ ତ ତୋମାଦେର ଚେୟାରମେନ୍ କେ ଅଇ ବାଗିଚୁ ନେବାର ଜନ୍ୟେ ଅନେକ ବର୍ଷ ଆଗେ ଚିଠି ଲିଖେଛିଲେନ । କୋନୋ ଉତ୍ତର ଦାଓନି କେନ ? ଏଖନ ସେ ବିଷୟ ଚିନ୍ତା କରାଯାଏ ନା ।" ଏହି ବିଷୟର ସତ୍ୟ ମିଥ୍ୟାର କୌଣସି ପ୍ରମାଣ ବାଲେଶ୍ୱରବାସୀଙ୍କଠାରେ

ନଥିଲା । ମାତ୍ର ଫକୀରମୋହନ ପରିବାରରେ କବିଙ୍କର ଶାନ୍ତିକାନନ ଶିରୋନାମ ଲେଖା ୪୫ ପୃଷ୍ଠାର ଏହାର ଅଂଶମାତ୍ର ମିଳେ । ଉଦ୍ୟାନଟି ଭଗବାନ ଚନ୍ଦ୍ର ମଣ୍ଡଳ ଚେୟାରମ୍ୟାନ ଓ ଭାଇସଚେୟାରମ୍ୟାନଙ୍କ ବର୍ତ୍ତମାନ ମଧ୍ୟ ଅବହେଳିତ ହୋଇଛନ୍ତି । ମାତ୍ର ସେମାନେ ଏହାର ସତ୍ୟତା ପ୍ରମାଣ କରି ପାରୁ ନାହାନ୍ତି । ତେଣୁ ଯେଉଁ ବ୍ୟକ୍ତି ନିଜର ତଥା ନିଜ ପରିବାରର ପ୍ରତିଷ୍ଠା ଗାନ କରିଛନ୍ତି, ତାହା କେତେଦୂର ସତ୍ୟ ଓ ତତ୍ସଙ୍ଗେ ସଂଗେ ପରିଶିଷ୍ଟ ଓ ଖବର କାଗଜରେ ପ୍ରକାଶିତ ତାରିଖ ଦେଖି ଏହାର ସତ୍ୟତା ଉପରେ କେହି ଜଣେ ଉପନୀତ ହୋଇ ପାରିବେ । ମ୍ୟୁନିସିପାଲିଟିର ଶାନ୍ତିକାନନ ଫାଇଲରେ ଜନସାଧାରଣଙ୍କର ପ୍ରସ୍ତାବ କମ୍ପା ଦଖଲ ନେବାପାଇଁ ଆବେଦନ କରିବା ଇତ୍ୟାଦି ଫାଇଲରେ ନଥିବା ଜଣାଯାଏ । ପାଠକମାନଙ୍କ ଦୃଷ୍ଟି ଅନ୍ତରାଳରେ ଏହି ଗୁରୁତ୍ୱପୂର୍ଣ୍ଣ କଥା ଯେପରି ନରହେ, ତେଣୁ ପରିଶିଷ୍ଟରେ ଦେବା ପୂର୍ବରୁ ଏହା ପ୍ରକାଶ କରାଗଲା ।

ଦୈନିକ ସମାଜରେ "ବ୍ୟାସକବି ଫକୀରମୋହନଙ୍କ ସ୍ମୃତିରକ୍ଷା' ଶିରୋନାମାରେ" ଶାନ୍ତିକାନନକୁ ଜନସାଧାରଣଙ୍କୁ ଛାଡ଼ିଦେବାକୁ ଅନୁରୋଧ' । ଏହା ସ୍ମୃତିରକ୍ଷା କମିଟିର ସଂପାଦକ ଅଚ୍ୟୁତାନନ୍ଦ ଦାସ ତା ୧୭ । ୧୦ । ୪୬ରେ ଲେଖିଛନ୍ତି । ସ୍ୱର୍ଗତ ବ୍ୟାସକବି ଫକୀର-ମୋହନଙ୍କ ସ୍ମୃତିରକ୍ଷା ନିମନ୍ତେ ତାଙ୍କ ପୁତ୍ରବଧୂଙ୍କଠାରେ ବାରମ୍ବାର ଅନୁରୋଧ କରି ବିଫଳ ହେବାରୁ ବାଲେଶ୍ୱର କଲେଜ ଛାତ୍ର ଛାତ୍ରୀ ଓ ଓ ଜନସାଧାରଣଙ୍କ ଉଦ୍ୟମରେ ଟ ୪୦୧ (ଚାରିଶତ ଏକ ଟଙ୍କା) ମ୍ୟୁନିସିପାଲିଟି ହାତରେ ଦିଆଯାଇଛି । କବିଙ୍କର ଅତିପ୍ରିୟ ଶାନ୍ତିକାନନକୁ ସାଧାରଣଙ୍କ ହାତରେ ଛାଡ଼ିଦେବା ପାଇଁ ବ୍ୟବସ୍ଥା କରିବାକୁ ନିବେଦନ କରାଯାଇଛି । ବାଲେଶ୍ୱରବାସୀ ତଥା ଉତ୍କଳର ଜନସାଧାରଣଙ୍କ ସାହାଯ୍ୟ ସହାନୁଭୂତି ଏହି ମହତ କାର୍ଯ୍ୟରେ ଅଯାଚିତଭାବେ ମିଳିବ ବୋଲି ଆଶା ।

ମ୍ୟୁନିସିପାଲିଟିରେ ରହିଥିବା ନଥିପତ୍ର କହେ ଯେ ସ୍ୱୟଂ ଚେୟାରମ୍ୟାନ ୨୬ । ୧୧ । ୪୭ ତାରିଖରେ ବାଲେଶ୍ୱର ମ୍ୟୁନିସିପାଲିଟି କମିଶନମାନଙ୍କ ଦ୍ୱାରା ତାହା ଏକୁଆର କରିବା ପାଇଁ ପ୍ରସ୍ତାବବାଦ

ଗୃହୀତ କରାଇଛନ୍ତି । ମିଥ୍ୟାର ଆବର୍ତ୍ତନ ସତ୍ୟକୁ ବେଶିଦିନ ଘୋଡ଼ାଇ ରଖିପାରେ ନାହିଁ । ଏହାଦ୍ୱାରା ସାଧାରଣ ଲୋକଙ୍କ ଇଚ୍ଛା ମଧ୍ୟ ପ୍ରତାରିତ ହୋଇଛି ।

ଦୁର୍ଭାଗ୍ୟ ଯେ ସେତେବେଳେ ଫକୀରମୋହନ ସାହିତ୍ୟ ପରିଷଦର ସଭାପତି, ସମ୍ପାଦକ, ପୂର୍ବତନ ସମ୍ପାଦକଙ୍କ ଠାରୁ ସ୍ମୃତିକମିଟି ସଂକ୍ରାନ୍ତୀୟ କାଗଜପତ୍ରମାନ ଗ୍ରହଣ କରି ତାହାର ଅବଲମ୍ବନରେ ପରିକ୍ରମା ଲେଖିବା ନିମିତ୍ତ ଯେଉଁ ପ୍ରେରଣା ସୃଷ୍ଟି କରିଥିଲେ ତାହା ପରିକ୍ରମାର ମୁଖବନ୍ଧରେ ଲିପିବଦ୍ଧ କରାଯାଇଛି । ସ୍ୱର୍ଗତ ଶରତଚନ୍ଦ୍ର ପାଣିଗ୍ରାହୀଙ୍କ ଦୁଇଭାଇ ଶ୍ରୀ ଶିଶିର କୁମାର ପାଣିଗ୍ରାହୀ ଶ୍ରୀ ବୈରାଗୀ ଚରଣ ବେହେରା ଏହିଭଳି ବନ୍ଧୁମାନେ ଶାନ୍ତିକାନନର କାଗଜମାନ ଉଦ୍ଧାର କରି ତାହା ସରକାରଙ୍କୁ ଓ ମ୍ୟୁନିସିପାଲିଟିକୁ ଗୋଟିଏ କରି ନକଲ ପ୍ରଦାନ କରିଥିଲେ । ବହୁ ପରିଶ୍ରମରେ ନଥିପତ୍ର କଢ଼ାଯାଇ ଦେଖାଗଲା ଯେ ସେଥିରେ ଜମିର ବିବରଣୀ ସହ ଯେଉଁ ଦରଖାସ୍ତ ହୋଇଥିଲା ତାହା ନାହିଁ । ଯାହାହେଉ ହିନ୍ଦୁ କଲେକ୍ଟରଙ୍କ ଦରଖାସ୍ତ ନକଲ [illegible] ଡେମିସିଲ ଜମି ସେଥିରୁ ବାଦ୍ ଦିଆଯାଇଥିବାର ନାନା କଥା କହିବାର ଶୁଣାଯାଉଥିଲା ।

ପୁନଶ୍ଚ ଚେୟାରମେନ ମହୋଦୟ ୧୨-୧୨-୫୧ ମସିହାରେ ତାଙ୍କର ୪୮୫ ନମ୍ବର ଚିଠିରେ ଫକୀରମୋହନ ସ୍ମୃତି କମିଟିର ସମ୍ପାଦକ ଶ୍ରୀ ଅଚ୍ୟୁତାନନ୍ଦ ଦାସଙ୍କୁ ଆଜି ଦୁଇ ହଜାର ଚାରିଶହ ଅଠାନବେ ଟଙ୍କା ବାରଅଣା ଜମା ଦେଲେ ଶାନ୍ତିକାନନ ଏକୁଆର ପ୍ରଦେଉିଂ ହେବ ବୋଲି ଲେଖିଥିଲେ ।

୧୯-୨-୫୨ ମସିହା ପର୍ଯ୍ୟନ୍ତ ସେ ଟଙ୍କା ଭିକ୍ଷା ଦ୍ୱାରା ସଂଗୃହୀତ ହୋଇ ନପାରିବାରୁ ସମ୍ପାଦକ ଶୀଘ୍ର ଦାଖଲ କରିବା ପାଇଁ କିଛିଦିନ ସମୟ ଚାହିଁଥିଲେ ।

ଚେୟାରମେନ ମହାଶୟ ନିର୍ଦ୍ଦେଶିତା ପ୍ରମାଣ ନିମନ୍ତେ ଅତିରିକ୍ତ ଜିଲ୍ଲାପାଳଙ୍କୁ ଜଣାଇ ଦେଇ ତା ୧୯-୫-୫୨ ରେ ଯେଉଁ ପତ୍ର ଲେଖିଥିଲେ, ତାହାର ଏକକପି ନକଲ ଫକୀରମୋହନଙ୍କ ସ୍ମୃତି କମିଟି ଅଚ୍ୟୁତାନନ୍ଦ ଦାସଙ୍କୁ ଲେଖିଥିଲେ ।

ସ୍କୁଲ ଓ ସହରରେ ବୁଲି ଜନସାଧାରଣଙ୍କଠାରୁ ଗୁରୁଅଣା ଅଠଅଣା ଲେଖାଏଁ ସଂଗ୍ରହ କରି ୧୭-୧-୫୩ ତାରିଖରେ ମ୍ୟୁନିସିପାଲିଟି ସି-୧୨୦୪୮ ରସିଦ ନମ୍ବରମୂଳେ ଦୁଇହଜାର ଗୁରୁଶହ ଅଠାନବେ ଟଙ୍କା ବାରଅଣା ପାଇଥିବା କଥା ଶାନ୍ତକାନନ ଫାଇଲରେ ଉଲ୍ଲେଖ ଅଛି ।

ପୁରାତନର ଇତିହାସ, ତାର ମୂଲ୍ୟବୋଧ ଏ ଯୁଗର ବୁଦ୍ଧିଜୀବୀଙ୍କ ନିକଟରେ ଅର୍ଥହୀନ ହୋଇଯାଉଛି । ମାତ୍ର ଜଣେ କୌଶଳୀ ପୌରପାଳ ଜନଜାଗରଣକୁ ନିଜ ଇଚ୍ଛା ମଥାରେ ପରିଚାଳିତ କରାଇ ନେବା କିଛି କମ୍ କଥା ନୁହେଁ । କେହି ଯଦି ସେହି ଫାଇଲ ପଢ଼ିବ ତା'ହେଲେ ଏବର ଶ୍ରେଷ୍ଠ ଲେଖକ ସାରଳା ପୁରସ୍କାରପ୍ରାପ୍ତ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କର ଏକ ପତ୍ର ସେହି ଫାଇଲରେ ନଥିଲେ ମଧ୍ୟ ସେତେବେଳର ଚେୟାରମେନ ତାଙ୍କ ଚିଠି ୧୧୫୯ ନମ୍ବର ୨୪-୮-୬୨ ତାରିଖରେ ଦେଇଥିବା ଉତ୍ତର ଦେଖିପାରିବେ ।

ଶାନ୍ତକାନନ ଜମି ଦଖଲ ହୋଇଥିବା ଘୋଷଣା ୨୭-୪-୫୩ ଶାନ୍ତକାନନର ଏ ୧-୮୦ ଡ଼ି: ସ୍ଥଳରେ ଏ ୧-୪୭ ଡ଼ି: ଦଖଲ ନିଆଯାଇଛି । **( Land acquisition declaration No 2433 – XVII-166/53 Dt. 24-4-53 published at page 232 in III part of Orissa Gazette on 26-3-53. )**

ପରିଣାମରେ ଦଖଲ ନେବା ପରେ ପରେ ବ୍ୟାସକବିଙ୍କ ସ୍ୱହସ୍ତ ରୋପିତ ବୃକ୍ଷମାନ କ୍ଷମତାସୀନ ପୌରପାଳଙ୍କଦ୍ୱାରା କର୍ତ୍ତନ କରାଯାଇ କାନନ ଉପରେ ସରକାରଙ୍କ ଦତ୍ତ (Slum Clearance Scheme) ରେ ଆସିଥିବା ଟଙ୍କା ବ୍ୟୟରେ ବୃତ୍ତିଜୀବୀମାନଙ୍କ ରହିବା ପାଇଁ ମ୍ୟୁନିସିପାଲିଟି ଗୃହମାନ ତିଆରି କରାଗଲା । ସେଦିନ ସମ୍ପାଦକ ପ୍ରତିବାଦ କରି କାରାବରଣ କରିବା ପାଇଁ ପ୍ରସ୍ତୁତ ଥିଲାବେଳେ ସରକାରଙ୍କ ପ୍ରଶାସନିକ ଦପ୍ତର ପୌରପାଳଙ୍କ କାର୍ଯ୍ୟକୁ ପସନ୍ଦ କରିବାରେ ସେଦିନ ଅନ୍ତରରେ ମର୍ମବେଦନା ଅନୁଭବ କରୁଥିଲି । ବୃକ୍ଷଚ୍ଛେଦନ କଥା 'ନିଆଁଖୁଣ୍ଟା'ରେ ପ୍ରକାଶ ପାଇଥିଲା । ସେହି ନିଆଁଖୁଣ୍ଟା ମୋତେ ଅଧ୍ୟାପକ ଚିନ୍ତାମଣି ବେହେରା ଦେଖାଇଥିଲେ । ଶାନ୍ତକାନନ ଦଖଲ ନିଆଯାଏ —୨୫-୪-୫୪ ମସିହାରେ ।

## ବାଲେଶ୍ୱର କଲେଜରେ ଫକୀରମୋହନ ସାହିତ୍ୟ ପରିଷଦ ଗଠନ

ପାହାଡ଼ିଆ ପାଣି ସମତଳ ଭୂଇଁରେ ପ୍ରବାହିତ ହେଲାବେଳେ ସବୁ ସମୟରେ ଏହା ଗୋଟିଏ ଧାରାରେ ଗତି କରି ନଥାଏ । କୌଣସି ସ୍ଥାନରେ ଏହାର ଅଧିକାଂଶ ଜଳରାଶି ଗୋଟିଏ ସ୍ରୋତରେ ଏଭଳି ଗତି କରେ ଯେ ଆମେ ତାକୁ କେବଳ ପ୍ରକୃତ ନଦୀ ବୋଲି କହିଥାଉଁ । ବେଳେବେଳେ ଅନୁଷ୍ଠାନମାନଙ୍କରେ ଏଭଳି ଗୁଣଗତ ପରିବର୍ତ୍ତନ ଘଟିଥାଏ । ଶ୍ରୀଯୁକ୍ତ କିଶୋରୀମୋହନ ତ୍ରିବେଦୀଙ୍କ ବଦଳି ପରେ ପରେ ଗୌରୀଶଙ୍କରଙ୍କ ବଂଶଜ ଶ୍ରୀ ଗିରିଜାଶଙ୍କର ରାୟ ପ୍ରିନ୍ସପାଲ୍‌ଭାବେ ବାଲେଶ୍ୱର କଲେଜକୁ ଆସିଲେ । ଶାନ୍ତିକାନନର ଏତାଦୃଶ ଅବସ୍ଥା ଦେଖି ସେ ଦୁଇଟୋପା ଲୁହ ଢାଳିଥିଲେ । ଡଃ କୁଞ୍ଜବିହାରୀ ଦାଶଙ୍କ ସଭାପତିତ୍ୱରେ କଲେଜରେ ଫକୀରମୋହନ ସାହିତ୍ୟ ପରିଷଦ ଜନ୍ମ ନେଲା ।

ଏଠାରେ ଏତିକି ଉଲ୍ଲେଖ କରିବା ଆବଶ୍ୟକ ଯେ ସ୍ଥଳବିଶେଷରେ ଏହି ଜଳରାଶି ଗତି ପରିବର୍ତ୍ତନ କରି ଅନ୍ୟତ୍ର ପ୍ରବାହିତ ହେଉଥିବାର ଓ ତାର କୂଳବର୍ତ୍ତୀ ଭୂଭାଗକୁ ଉର୍ବର ଓ ଫଳ-ପୁଷ୍ପ-ଶସ୍ୟ ସମ୍ଭାରରେ ପରିପୂର୍ଣ୍ଣ କରି ଦେଉଥିବାର ମଧ୍ୟ ଦେଖିବାକୁ ମିଳେ । ଏ ଅବସ୍ଥାରେ ଜଣେ ପ୍ରଥମ ଧାରାର ଅସ୍ତିତ୍ୱକୁ ସ୍ୱୀକାର କରିବାକୁ କୁଣ୍ଠାବୋଧ କରେ । ଏହା ଯେଉଁଠି ଘଟେ, ସେ ସ୍ଥଳରେ ନଦୀର ଦ୍ୱିତୀୟ ଧାରାକୁ ପ୍ରଥମ ଧାରାର ନାମରେ ନାମିତ କରିବା ଉଚିତ ନୁହେଁ, କି ପ୍ରଥମ ଧାରାକୁ ସମଗ୍ର ନଦୀ ନାମରେ ଗ୍ରହଣ କରିବା ସଂଗତ ନୁହେଁ ।

ଏହା ଭିତରେ ଆମେ ଶୁଣିବାକୁ ପାଇଲୁ ଯେ ବ୍ୟାସକବିଙ୍କ ନାତୁଣୀ ଶ୍ରୀମତୀ ବୀଣାପାଣି ମିଶ୍ର ଶାନ୍ତିକାନନକୁ ନିଜ କବଳରୁ ମୁକ୍ତ ନ କରିବା ପାଇଁ ନାନାପ୍ରକାର ଚେଷ୍ଟା କରୁଛନ୍ତି । ଘୋର ପରିତାପର ବିଷୟ ଏହି ଯେ ଆମର ଜାତୀୟ ସରକାର ଜନମତକୁ ବେଖାତିର କରି ବ୍ୟକ୍ତିବିଶେଷଙ୍କ ଦ୍ୱାରା ପ୍ରଭାବିତ ହୋଇ ଗତ ତା ୧୭ । ୧୧ । ୫୦ରେ ଗେଜେଟ୍‌ରେ ଜଣାଇଲେ ଯେ ସରକାରଙ୍କ ପୂର୍ବ ଘୋଷଣା ରଦ୍ଦ ହେଲା । ଏହାଛଡ଼ା 'ଦିଗନ୍ତ'ର ଅନ୍ୟାନ୍ୟ ପ୍ରସଙ୍ଗ ଭିତରେ ଜଣାଗଲା ଯେ

ବ୍ୟାସକବିଙ୍କର ଶାନ୍ତକାନନକୁ ଜାତୀୟ ସମ୍ପତ୍ତିରେ ପରିଣତ କରିବା ପାଇଁ ପ୍ରବଳ ଆନ୍ଦୋଳନ କରିବାକୁ ଆହ୍ୱାନ ଦିଆଯାଇଛି । ହଠାତ୍ ଏଭଳି ଏକ ଖବର ପାଇ ସ୍ମୃତି କମିଟିର କର୍ମକର୍ତ୍ତା କେତେଜଣ କହି ବସିଲେ—

"କ୍ଷୁଦ୍ର ଶିପ୍ରା ସ୍ରୋତ ବିଖ୍ୟାତ ଜଗତେ
ମହାନଦୀ ନାମ ରହିଲା ଗୁପତେ ।

ତାତ୍ପର୍ଯ୍ୟ ଏହି ଯେ ସ୍ମୃତି କମିଟିର ସମ୍ପାଦକ ଫକୀରମୋହନ ସାହିତ୍ୟ ପରିଷଦର ମଧ୍ୟ ସମ୍ପାଦକଭାବେ କାର୍ଯ୍ୟ କରୁଥିଲେ । କାରଣ ବାଲେଶ୍ୱରରେ ସେତେବେଳେ ସାଂସ୍କୃତିକ ଅନୁଷ୍ଠାନମାନ ଏପରି କାର୍ଯ୍ୟକାରୀ ହେଉଥିଲା ଯେ ଅନ୍ୟ ଜିଲ୍ଲାମାନେ ବାଲେଶ୍ୱରକୁ ଏ ଦିଗରେ ସ୍ୱାଧୀନୋତ୍ତର ଓଡ଼ିଶାର ଅଗ୍ରଣୀ ବୋଲି ସ୍ୱୀକାର କରୁଥିଲେ । ଏହାକୁ ଅନ୍ୟ ଏକ ପୁସ୍ତକରେ ପ୍ରକାଶ କରିବାର ବାଞ୍ଛା ଲେଖକ ରଖିଲେ । କାରଣ 'ସ୍ମୃତିମନ୍ଥନ' ମଧ୍ୟରେ ଉଭୟକୁ ନେଲେ କଳେବର ବୃଦ୍ଧି ହୋଇ ଏହି ଖାଦ୍ୟ ବସ୍ତୁ କିରୋସିନର ଦର ସାଙ୍ଗକୁ ମୁଦ୍ରଣ ଜନିତ ଦୁର୍ଗତିଯୋଗୁଁ ପ୍ରକାଶ ପାଇବାର ସନ୍ଦେହ ବଢ଼ିଯିବ ।

ଡଃ ମାୟାଧର ମାନସିଂ ସମ୍ପାଦକଙ୍କ ନିମନ୍ତ୍ରଣରେ ଦୁଇଦିନ ପାଇଁ ଆମ୍ଭ ବାଲେଶ୍ୱରରେ ଆତିଥ୍ୟ ଗ୍ରହଣ କରିଥିଲେ । ଏକ ପୁସ୍ତକ ରଚନା କରିବା ନିମନ୍ତେ ବ୍ୟାସକବିଙ୍କର ଗୃହ ଓ ତାଙ୍କ ବିଷୟରେ ବହୁକଥା ସେ ଟିପାଖାତାରେ ଲେଖି ରଖିଥିଲେ । ତାହା ପରେ "ସରସ୍ୱତୀ ଫକୀରମୋହନ"ରେ ପ୍ରକାଶ ପାଇଛି । **Saga of the Land of Lord Jagannath** ପୁସ୍ତକରେ ମଧ୍ୟ ଫକୀରମୋହନଙ୍କ ଛବି ସହ ଅନେକ କଥା ପ୍ରକାଶ ପାଇଛି ।

ଡଃ କୁଞ୍ଜବିହାରୀ ଦାଶ ଫକୀରମୋହନ ସାହିତ୍ୟ ପରିଷଦର ସ୍ରଷ୍ଟା ଏକଥା ସ୍ୱୀକାର୍ଯ୍ୟ । ମାତ୍ର ଫକୀରମୋହନ ସ୍ମୃତି କମିଟି ଆନୁଷ୍ଠାନିକ ଭାବରେ କାର୍ଯ୍ୟ କରୁଥିଲାବେଳେ ଅନ୍ୟ ଏକ ଫକୀରମୋହନ ସାହିତ୍ୟ ପରିଷଦ ନାମରେ ଅନୁଷ୍ଠାନ ଗଠନ ପଛରେ ତାଙ୍କର ମନସ୍ତତ୍ତ୍ୱ ଅନ୍ତରରେ କ୍ରିୟାଶୀଳ ହେଉଥିବାର ବିଷୟ ଜଣା ପଡ଼ି ଯାଇଥିଲା । ମାତ୍ର ସ୍ମୃତି

କମିଟିର କର୍ମକର୍ତ୍ତାଗଣ ଓ ସମ୍ପାଦକ ଫକୀରମୋହନ ସାହିତ୍ୟ ପରିଷଦ ସହିତ କାନ୍ଧକୁ କାନ୍ଧ ମିଳାଇ କାର୍ଯ୍ୟ କରିବା ନିମନ୍ତେ ଆଗଭର ହୋଇ ପଡ଼ୁଥିଲେ । ସ୍ମୃତି କମିଟିର ସମ୍ପାଦକଙ୍କୁ ସାଙ୍ଗରେ ନେଇ କିପରି ସାହିତ୍ୟ ଅନୁଷ୍ଠାନମାନ ଗଢ଼ି ଉଠିବ ସେଥି ଚେଷ୍ଟାରେ ଚେଷ୍ଟିତ ଥିଲେ କୁଞ୍ଜବାବୁ । ସାପ୍ତାହିକ ସାହିତ୍ୟ ଆଲୋଚନାଚକ୍ରମାନ ବାଲେଶ୍ୱର କଲେଜରେ ବିଧିବଦ୍ଧ ଆରମ୍ଭ କରି ଓ ସମ୍ପାଦକଙ୍କୁ ସାଙ୍ଗରେ ନେଇ କନିକା ଧାମରା ଇତ୍ୟାଦି ଭ୍ରମଣ କରି ସେହି ସ୍ଥାନମାନଙ୍କରେ ସାହିତ୍ୟିକ ଅନୁଷ୍ଠାନମାନ ଉଦ୍‌ଘାଟନ କରାଇ ତାହାର ପରିଚାଳନା ଦାୟିତ୍ୱ ଉପଯୁକ୍ତ ଯୁବକଙ୍କ ହସ୍ତରେ ଅର୍ପଣ କରି ଆସିଥିଲେ । ଧାମରା ଭ୍ରମଣରୁ ଆସି ସେ 'ଧାମରା' ବହି ଲେଖିଥିଲେ ।

ସେ ଯେ ଲୋକଗୀତ ସଂଗ୍ରହରେ କୃତିତ୍ୱ ଅର୍ଜନ କରିଛନ୍ତି ଓ ଓଡ଼ିଶାରେ ସମ୍ମାନିତ ହୋଇଛନ୍ତି ତାହା କହିଲେ ଆମେ ଅପରାଧୀ ହେବୁ । ତାହା ବ୍ୟତୀତ ତାଙ୍କର ଯୁବକମାନଙ୍କ ପ୍ରତି ବାତ୍ସଲ୍ୟ ସ୍ନେହ ଓ ବନ୍ଧୁମାନଙ୍କ ପ୍ରତି ସ୍ନେହ ପ୍ରଦର୍ଶନ କରି ଯେଉଁ ମଧୁର ପରିବେଶ ସୃଷ୍ଟି କରିଥିଲେ ତାହା ତାଙ୍କୁ ଚିରଦିନ ଅମର କରି ରଖିବ ।

ତାଙ୍କ ପ୍ରତିଷ୍ଠିତ ସାହିତ୍ୟ ପରିଷଦ ଆଜି ଜୀବିତ ଓ ମୂର୍ତ୍ତିମନ୍ତ ହୋଇଛି । ଅବାଧ ଓ ଉଚ୍ଛୃଙ୍ଖଳ ଯୁବକମାନେ ତାହାଙ୍କୁ ପିତୃତୁଲ୍ୟ ଚକ୍ଷୁରେ ଦେଖୁଥିଲେ । ସେ ତାଙ୍କ ସମବୟସ୍କ ଲୋକଙ୍କଠାରେ ସମୟ ସମୟରେ ସୁଖ ଦୁଃଖ ବାର୍ତ୍ତା ଜୀବନର ବହୁ ରହସ୍ୟ ଉଦ୍‌ଘାଟନ କରି ପ୍ରାଣର ଦୁର୍ବହ ଭାରକୁ ଲଘୁ କରୁଥିଲେ । ଏହା ସତ୍ତ୍ୱେ ସ୍ମୃତି କମିଟି କର୍ମକର୍ତ୍ତାଙ୍କ ପ୍ରତି ବହୁ ଅନ୍ୟାୟ କରିଛନ୍ତି; କାରଣ ତାଙ୍କର କୌଣସି ରଚନାରେ ସ୍ମୃତି କମିଟି କଥା ଉଲ୍ଲେଖ କରି ନାହାନ୍ତି । ପୁଣି ବହୁସ୍ଥଳରେ ଏଭଳି ଉଦ୍‌ଭଟ କଥା ଲେଖିଛନ୍ତି ତାହା ବିଭ୍ରାନ୍ତିକର । ୧୯୫୪ରେ ଶାନ୍ତିକାନନ ଦଖଲ ପରେ ସ୍ମୃତି ମନ୍ଦିର ପ୍ରସ୍ତୁତ ହେଲା । ସେତେବେଳେ ଗଡ଼ନାୟକବାବୁ ତାହାକୁ ଉଦ୍‌ଘାଟନ କରିଥିଲେ ।

ରାଜନୈତିକ ସଂଗଠନରେ ଯେଭଳି ଉଚ୍ଚାସନ ପାଇଁ ଦ୍ୱନ୍ଦ୍ୱ ବା କନ୍ଦଳ ଥାଏ, ଫକୀରମୋହନ ସାହିତ୍ୟ ପରିଷଦରେ ସେହିଭଳି କନ୍ଦଳ

ଦେଖା ଦେଇଥିଲା । ତାଙ୍କର ପ୍ରତିଦ୍ୱନ୍ଦୀ ଥିଲେ ଅଧ୍ୟାପକ ସିଦ୍ଧେଶ୍ୱର ହୋତା । ସେ ମଧ୍ଯ ଗୋଟିଏ ଗୋଷ୍ଠୀ ସୃଷ୍ଟି କରିଥିଲେ ସାହିତ୍ୟ ପରିଷଦ ମଧ୍ୟରେ ।

## ପ୍ରମାଣ ମୀମାଂସା

ସତ୍ୟକୁ ଅପଲାପ କରି ଏକ ଆତ୍ମଘାତୀ ଅପରାଧ । ପୁନଶ୍ଚ ଉଦ୍ଦେଶ୍ୟପୂର୍ଣ୍ଣ ଭାବରେ ଗୋଟିଏ ଅନୁଷ୍ଠାନ ଓ ତାର କର୍ମୀମାନଙ୍କୁ ଅବହେଳିତ କରିବା ତା' ଅପେକ୍ଷା ଆହୁରି ଗର୍ହିତ କାର୍ଯ୍ୟ । ଏହି ପରିପ୍ରେକ୍ଷୀରେ ସ୍ମୃତି କମିଟିର କାର୍ଯ୍ୟକାରିତା ବିଷୟ ପୌରପାଳଙ୍କର ଅଫିସରେ ଥିବା ଏକ ଆବେଦନପତ୍ର ଦ୍ରଷ୍ଟବ୍ୟ ।

ସ୍ମୃତି କମିଟିର କାର୍ଯ୍ୟ କେତେଦୂର ପରିବ୍ୟାପ୍ତ ଥିଲା ତାହା ସେହି ବିଗତ ଆତ୍ମା ଫକୀରମୋହନ କଲେଜର ଅଧ୍ୟକ୍ଷ ୰ ଘନଶ୍ୟାମ ଦାସଙ୍କ ପତ୍ରରୁ ସ୍ପଷ୍ଟ ଜଣାପଡ଼େ । ତାର ଗୋଟେ ନକଲ ସମ୍ପାଦକ ସ୍ମୃତି କମିଟି ନିକଟକୁ ପଠାଇଥିଲେ । ଏହି ପତ୍ରଟି ବଡ଼ ଉଦ୍‌ବେଗପୂର୍ଣ୍ଣ ଭାବରେ ସ୍ମୃତି କମିଟିର ସମ୍ପାଦକଙ୍କୁ ଲେଖା ହୋଇଥିଲା । ତାହାର ନଥିପତ୍ର ସ୍ମରଣିକା ଲେଖିବା ପୂର୍ବରୁ ସ୍ମୃତି କମିଟିର ସମ୍ପାଦକ ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତିଙ୍କୁ ଓ ସେତେବେଳର ସାହିତ୍ୟ ପରିଷଦର ସମ୍ପାଦକ ଶ୍ରୀ ବଜକୃଷ୍ଣ ଦେଙ୍କୁ ଦିଆଯାଇଥିବା କଥା ମ୍ୟୁନିସିପାଲିଟିର ଏକ ପତ୍ରରୁ ଜଣାପଡ଼େ ।

୰ ଘନଶ୍ୟାମବାବୁ ପୌରପାଳଙ୍କୁ ଅନୁରୋଧ କରି ଲେଖିଛନ୍ତି ଯେ ତାଙ୍କର ଅନୁରୋଧକ୍ରମେ ଫକୀରମୋହନ ମେମୋରିଏଲ କମିଟିକୁ ତାଙ୍କର ଅନୁରୋଧକ୍ରମେ ତାଙ୍କର ସଭ୍ୟମାନଙ୍କୁ ଅନ୍ତର୍ଭୁକ୍ତ କରାଯାଉ ! ଫକୀରମୋହନ ସାହିତ୍ୟ ପରିଷଦ ତରଫରୁ ତିନିଜଣ ଯଥାକ୍ରମେ ଶ୍ରୀ କୁଞ୍ଜବିହାରୀ ଦାଶ, ଶ୍ରୀ ଶ୍ୟାମସୁନ୍ଦର ମହାପାତ୍ର, ଶ୍ରୀ ପ୍ରହ୍ଲାଦ ମହାନ୍ତି ଓ ଷ୍ଟାଫ ମଧ୍ୟରୁ ଶ୍ରୀ କ୍ଷିତୀଶ ଚନ୍ଦ୍ର ଦେବ, ଶ୍ରୀ ମନ୍ମଥ ନାଥ ଦାସ, ଶ୍ରୀ ରାମଚନ୍ଦ୍ର ପଟ୍ଟନାୟକ, ଶ୍ରୀ ହୀରାଲାଲ ଦେବନାଥ ଓ କଲେଜ ଇଉନିଅନ ତରଫରୁ ଶ୍ରୀ ଦୈତାରୀ ଦାସ, ଶ୍ରୀ ବୈକୁଣ୍ଠ ନାଥ ଗିରି, ଶ୍ରୀ ବୃନ୍ଦାବନ ଚନ୍ଦ୍ର ଦାସ ଓ ଶ୍ରୀ ଯାଦବ ପଟ୍ଟନାୟକଙ୍କୁ ନିଆଯାଉ । ଏଥିରେ କାହାର

ଦ୍ୱିମତ ହେବାର ନଥିଲା । ସେମାନେ ସମସ୍ତେ ଏହି ସ୍ମୃତି କମିଟିରେ ଅନ୍ତର୍ଭୁକ୍ତ ହେଲେ ପରେ ପରେ ସ୍ମୃତି କମିଟି ଓ ସାହିତ୍ୟ ପରିଷଦର ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୋଇପଡ଼ିଲେ । ସାହିତ୍ୟ ପରିଷଦର ସମ୍ବିଧାନ ପ୍ରସ୍ତୁତ ନହେଲା ପର୍ଯ୍ୟନ୍ତ ଏହା ନହେଉ ବୋଲି ୰ ରବୀନ୍ଦ୍ର ନାଥ ସରକାର ଆପତ୍ତି ଉଠାଇଥିଲେ, କାରଣ ସେ ସ୍ମୃତି କମିଟିର ଜଣେ ବିଶିଷ୍ଟ ସଭ୍ୟ ଥିଲେ । ତାଙ୍କର ମହତ୍ ଉଦ୍ଦେଶ୍ୟ ଏହା ଦ୍ୱାରା ସିଦ୍ଧ ଘଟିଲା । ୧୯୫୦ ମସିହା ଫକୀରମୋହନ ମହାବିଦ୍ୟାଳୟରେ ସମ୍ବିଧାନ ପ୍ରସ୍ତୁତ ନିମନ୍ତେ ବାଲେଶ୍ୱରବାସୀ, ସ୍ମୃତି କମିଟି ଓ ସାହିତ୍ୟ ପରିଷଦର ସଭ୍ୟମାନଙ୍କର ବହୁ ବାଦାନୁବାଦ ଓ ମତାନ୍ତର ଭିତରେ ଗୃହୀତ ହୋଇ ୧୯୫୧ ମସିହାରେ ଗୃହୀତ ହେଲା ।

ସାହିତ୍ୟ, ସଙ୍ଗୀତ ସମ୍ମିଳନୀ ୧୯୪୯, ୧୯୫୦ ଓ ୧୯୫୧ ତିନିବର୍ଷ ଧରି ପାଳିତ ହୋଇଥିବା କଥା ରଜତଶ୍ରୀରେ ଉଲ୍ଲେଖ ରହିଛି । ମାତ୍ର ବିଗତ ଆତ୍ମା ୰ ମଧୁସୂଦନ ରାୟ, ସାଂସ୍କୃତିକ ଉତ୍ସବରେ ନିମାନ୍ତ୍ରୟରେ ସର୍ବୋପରି ଗୋଟିକରେ ଶ୍ରୀ ଅଚ୍ୟୁତାନନ୍ଦ ଦାସ ଓ ଅନ୍ୟ ଦୁଇଥର ଶ୍ରୀ ରାଘବାନନ୍ଦ ପାଣିଗ୍ରାହୀ ସମ୍ପାଦକ ହୋଇଥିଲେ । ଶ୍ରୀ ଅଚ୍ୟୁତାନନ୍ଦ ଦାସ ଯୁଗ୍ମ ସମ୍ପାଦକରୂପେ ମନୋନୀତ ହୋଇଥିଲେ । କୋଷାଧ୍ୟକ୍ଷ ଭାବରେ ୰ ରବୀନ୍ଦ୍ର ନାଥ ସରକାର ଥରେ ମାତ୍ର ୧୯୫୧ରେ ଶ୍ରୀ ସୁକୁମାର ସାହୁ କୋଷାଧ୍ୟକ୍ଷଭାବେ ମନୋନୀତ ହୋଇଥିଲେ । ସ୍ମୃତି ମହନ ପ୍ରକାଶିତ ହେବାପରେ ବାଲେଶ୍ୱରରେ ସାଂସ୍କୃତିକ ଅଭ୍ୟୁତ୍ଥାନ ଲେଖିବାର ଆୟୋଜନ ଅନ୍ୟମାନେ କରୁଥିବାର ଶୁଣାଯାଏ । ସେଥିରେ ସବିଶେଷ ବିବରଣୀ ପ୍ରକାଶ ପାଇବ ।

ସାହିତ୍ୟ, ସଙ୍ଗୀତ ଓ ଚାରୁକଳା ପ୍ରଦର୍ଶନୀମାନ ବାଲେଶ୍ୱରରେ ଯେଉଁଭଳି ଭାବେ ହେଉଛି ତାହାର ମୂଳରେ ଯେଉଁ ପ୍ରେରଣା ତାହା ସେହି ୧୯୪୭ ମସିହା ଛାତ୍ରମାନଙ୍କର ଏକାଙ୍କିକା, ନାଟକ ପରିବେଷଣ ବ୍ୟତୀତ ଅନ୍ୟ କିଛି ନୁହେଁ ।

ବାଲେଶ୍ୱରରେ ଓଡ଼ିଶୀ ସଙ୍ଗୀତ ପ୍ରଚାର ପାଇଁ ଯେଉଁ ଚିନ୍ତା ତାହା କାର୍ଯ୍ୟକାରୀ ହୋଇଥିଲା ୰ ମଧୁସୂଦନ ରାୟ, ଶ୍ରୀମତୀ ରମା ପାଣିଗ୍ରାହୀ ଓ

୰ ଜ୍ଞାନରଞ୍ଜନ ପଟ୍ଟନାୟକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ । ଶ୍ରୀ ରାମଚନ୍ଦ୍ର ମହାପାତ୍ରଙ୍କର ବାଲେଶ୍ୱରରେ ଛାତ୍ରଛାତ୍ରୀମାନଙ୍କୁ ସଙ୍ଗୀତ ଶିକ୍ଷାଦେବା ଓ କଟକରୁ ୰ ଜ୍ଞାନରଞ୍ଜନ ପଟ୍ଟନାୟକ କେଳୁଚରଣଙ୍କୁ ଅଣାଇ ନାନା କନ୍ୟାମାନଙ୍କୁ ନୃତ୍ୟଶିକ୍ଷା ଦେବା ଦ୍ୱାରା ବାଲେଶ୍ୱରବାସୀଙ୍କର ଏକ ଅଭାବ ପୂରଣ ହେଲା । ମାତ୍ର ସଙ୍ଗୀତ ଓ ନୃତ୍ୟକଳା ପ୍ରଦର୍ଶନମାନଙ୍କରେ ଅଧ୍ୟକ୍ଷ ଘନଶ୍ୟାମ ଦାସଙ୍କର ଯେଉଁ ସହାନୁଭୂତି ଥିଲା ତାହା ବାଲେଶ୍ୱରବାସୀ ଭୁଲିଯିବେ ନାହିଁ ।

ଏହାଛଡ଼ା ଓଡ଼ିଆ ଝିଅମାନଙ୍କ ମଧ୍ୟରେ ୰ ନର୍ତ୍ତକୀ ପରିଡ଼ା, ଶ୍ରୀମତୀ ଅନସୂୟା ପଟ୍ଟନାୟକ, ଶ୍ରୀମତୀ ପ୍ରଭାମୟୀ ମହାନ୍ତି, ଶ୍ରୀମତୀ ଜ୍ୟୋତିର୍ମୟୀ ମହାପାତ୍ର, ଶ୍ରୀମତୀ ଗୀତାରାଣୀ ମିଶ୍ର ଓ ଶ୍ରୀମତୀ ବନ୍ଦନା ପଟ୍ଟନାୟକମାନେ ଫକୀରମୋହନ ସ୍ମୃତି କମିଟିମାନଙ୍କରେ ଓ ଉପାନ୍ତ ଅଞ୍ଚଳମାନଙ୍କରେ ଭଞ୍ଜଙ୍କର ଗୀତ ପ୍ରଚାର କରିବାରେ ସାହାସୀ ହୋଇ ବାଲେଶ୍ୱରର ସାଂସ୍କୃତିକ ଜୀବନରେ ଏକ ପ୍ରକାର ପରିବର୍ତ୍ତନ ଆଣିଥିଲେ । ଏମାନେ ସମସ୍ତେ ଥିଲେ ରାମଚନ୍ଦ୍ର ମହାପାତ୍ରଙ୍କର ଛାତ୍ରୀ । ତତ୍ପରେ ୰ ଜ୍ଞାନରଞ୍ଜନ ପଟ୍ଟନାୟକଙ୍କ ଚେଷ୍ଟା ଓ ଫକୀରମୋହନ ପରିଷଦର ସମ୍ପାଦକଙ୍କ ସହଯୋଗରେ ଟାଉନହଲଠାରେ ସଙ୍ଗୀତ ସ୍କୁଲ ଖୋଲାଯାଏ ।

## ସାହିତ୍ୟ ସେବାକୃତି

ପରିପ୍ରେକ୍ଷିତ ସମ୍ପର୍କରେ ଆଲୋଚନା କଲାବେଳେ ଆଉ କେତୋଟି କଥା ଏଠାରେ ପ୍ରକାଶ କରିବା ବାଞ୍ଛନୀୟ । ତାହା ହେଉଛି ଭଞ୍ଜ ସାହିତ୍ୟର ପ୍ରଚାର । ଉତ୍ତର ବାଲେଶ୍ୱରରେ ଓଡ଼ିଶୀ ସଙ୍ଗୀତର ପ୍ରଚାର ଓ ଫକୀରମୋହନ ପରିକ୍ରମା ପାଇଁ ଅର୍ଥ ସଂଗ୍ରହ ଓ ଶେଷରେ ଶାନ୍ତିକାନନରେ ଫକୀରମୋହନଙ୍କ ଅର୍ଦ୍ଧାଙ୍ଗ ମୂର୍ତ୍ତି ପ୍ରତିଷ୍ଠା ପାଇଁ ଉଦ୍ୟମ କରାଗଲା । ଫକୀରମୋହନ ସାହିତ୍ୟ ପରିଷଦ ଦ୍ୱାରା ଦୁଇଖଣ୍ଡ ପ୍ରକାଶିତ ପୁସ୍ତକରେ କେବଳ ଫକୀରମୋହନ ସାହିତ୍ୟ ପରିଷଦ ବିଷୟରେ ଲେଖକମାନଙ୍କର ଲେଖା କେବଳ ଖଣ୍ଡିତ ନୁହେଁ, ତାହା ପ୍ରମାଦପୂର୍ଣ୍ଣ । ଦିନ ଆସିବ ଯେତେବେଳେ ଏହାର ସବିଶେଷ ବିବରଣୀ ଜାଣିବା ପାଇଁ ଭବିଷ୍ୟତ ପୁରୁଷମାନେ ଇଚ୍ଛା ପ୍ରକାଶ କରିବେ । ସେମାନେ ଏହି

ଭ୍ରମପୂର୍ଣ୍ଣ ଲେଖା ପଢ଼ି ନାନାଦିଗରୁ ବିଭ୍ରାନ୍ତିକର କଳ୍ପନା ନେଇ ସମାଲୋଚନାରେ ଲିପ୍ତ ହେବେ । ଏହି ପୁସ୍ତକମାନଙ୍କରେ ଯେଉଁ କେତେଜଣଙ୍କର ପ୍ରଚ୍ଛନ୍ନ ଅହମିକାପୂର୍ଣ୍ଣ ଲେଖା ତାହାକୁ ସେମାନେ ସତ୍ୟ ବୋଲି ଯେନ ନାନା ପ୍ରକାର ବାଦବିସମ୍ବାଦରେ ଉପନୀତ ହେବେ । ତେଣୁ ସେମାନଙ୍କ ପାଇଁ ପଥ ପରିଷ୍କାର କରିବା ଉଚିତ । ବିଦଗ୍ଧ ସୁତ୍ରରୁ ଯାହା ସତ୍ୟ ତାହା ଲୋକମାନସ ଆଦର କରି ନେଇ ପାରିବ ତାହାର ପ୍ରଚେଷ୍ଟା କେହି କରିଯିବା ଉଚିତ । ନୃତ୍ୟକୁ ଦୂରରୁ ପୂର୍ଣ୍ଣରୂପେ ଉପଭୋଗ କରି ନପାରିଲେ ମଧ୍ୟ ତାର ନୂପୁର ନିକ୍ୱଣ ଅନେକ ସମୟରେ ମନୋରଞ୍ଜନ କରିଥାଏ । ପାଠକମାନେ ଏହାର ପ୍ରତ୍ୟକ୍ଷ ଦ୍ରଷ୍ଟା ନହେଲେବି ଦ୍ରଷ୍ଟାର ଲେଖାରୁ ସେହି ଶବ୍ଦ ସଂଗ୍ରହ କରିବାର ସୁଯୋଗ ନେବେ ।

ସାରଳା ଦାସଙ୍କର ଘର କେଉଁଠାରେ ଆବିଷ୍କାର କରିବାକୁ ଯାଇ ପରମ୍ପରାରୁ ବିଚ୍ୟୁତ ହୋଇ ବିଧି 'ଅନୁମାନ' ଅଥବା ବିଶ୍ୱାସର ବଶୀବର୍ତ୍ତୀ ହୋଇ ଯେପରି ସମାଲୋଚକ ପ୍ରବନ୍ଧ ଲେଖୁଛନ୍ତି ପରେ ତାହାହିଁ ହେବ । ଲେଖା ହୋଇଥିବା ବିଷୟକୁ ଭାଙ୍ଗି ଅନ୍ୟ ଏକ ନୂତନ ବିଷୟ ଗବେଷଣ କରିବାକୁ ହେଲେ ସୁଦୃଢ଼ ଉପାଦାନ ପ୍ରୟୋଜନ । ତେଣୁ ଏହା ଏଠାରେ ଯୋଗାଇ ଦିଆଯାଇଛି ।

## ବାଲେଶ୍ୱରରେ ସଙ୍ଗୀତ ବାତାବରଣ

ଭାରତ ସ୍ୱାଧୀନତା ଅର୍ଜନ କରିବା ସଙ୍ଗେ ସଙ୍ଗେ ଏ ଜାତିର କୃତି ସନ୍ତାନମାନେ ମନୋନିବେଶ କରିଥିଲେ ବିଶେଷ ଭାବରେ ଷଡ଼େଇକଳା, ଖରସୁଆଁ, ମେଦିନୀପୁର, ଟିକାଲି, ମଞ୍ଜୁଷା, ତରଳା, ହରିଡ଼ମାଳଗୋଳ ଏହିଭଳି କେତେଗୋଟି ଅଞ୍ଚଳକୁ ଓଡ଼ିଶା ଆଣିବା ପାଇଁ । ସେଥିପାଇଁ ଦିବାକର ପଟ୍ଟନାୟକ, ଯଦୁମଣି ମଙ୍ଗରାଜ, ଗୋଦାବରୀଶ ମହାପାତ୍ର ଇତ୍ୟାଦି ବାଲେଶ୍ୱରଠାରେ ସଭମାନ କରିଥିଲେ । ଏଥିରେ ସେମାନେ ଫକୀରମୋହନ ସ୍ମୃତି କମିଟିର ସମ୍ପାଦକ ସହଯୋଗ କରିଥିଲେ । ଉତ୍କଳ ସମ୍ମିଳନୀର ଏକ ସଭା ମେଦିନୀପୁର ସୁବର୍ଣ୍ଣରେଖା ନଦୀର ଅପରପାର୍ଶ୍ୱରେ ଜମିଦାପାଳଠାରେ ଭାଗବତ ମହାନ୍ତିଙ୍କ ଚେଷ୍ଟାରେ ବସିଥିଲା ।

ଉପାନ୍ତ ଅଞ୍ଚଳରେ ଭଞ୍ଜ ସାହିତ୍ୟର ଚର୍ଚ୍ଚା ପାଇଁ ବିଚ୍ଛନ୍ଦ ପଟ୍ଟନାୟକ ବାରମ୍ବାର ଅନୁରୋଧ କରିଥିଲେ । ତାଙ୍କର ଦୁଇଜଣ ଉତ୍ସର୍ଗୀକୃତ ଛାତ୍ର ଶ୍ରୀ ହୃଦାନନ୍ଦ ରାଏ ଓ ଶ୍ରୀ ରଜତକୁମାର କରଙ୍କୁ ସେ କେବଳ ସମ୍ପାଦକଙ୍କ ସହ ପରିଚିତ କରାଇ ଦେଇନଥିଲେ, ଏଥିପାଇଁ ଅର୍ଥ ମଧ୍ୟ ଯୋଗାଇ ଦେଇଥିଲେ । ଉଦ୍ଦେଶ୍ୟ ଥିଲା ସୀମା କମିଶନ ବସିବା ପୂର୍ବରୁ ଏ ଜାତିର ସାହିତ୍ୟ କୃତିକୁ ମେଦିନୀପୁରବାସୀଙ୍କ ନିକଟରେ ପହଞ୍ଚାଇବା । ଏହି କଲେଜ ହଲରେ କେବଳ ନୁହେଁ, ଉତ୍ତର ବାଲେଶ୍ୱରରେ ବହୁଥର ଭଞ୍ଜ ସାହିତ୍ୟ ଆଲୋଚିତ ହୋଇଥିଲା । ଶ୍ରୀ ରଜତ କର ଓ ହୃଦାନନ୍ଦ ରାଏ ବହୁଥର ବାଲେଶ୍ୱର ଆସି ଯେଉଁ ସଭାମାନ କରିଥିଲେ ତାହାର ପ୍ରଭାବ ଲୋକମାନଙ୍କ ଉପରେ ବିଶେଷଭାବେ ପଡ଼ିଥିଲା । ଅଧ୍ୟାପକ ପ୍ରିୟକୃଷ୍ଣ ମିଶ୍ର ଏ ଦିଗରେ ଥିଲେ ଅଗ୍ରଣୀ । ତାଙ୍କର ସୁଲଳିତ କଣ୍ଠ ଓ ବାଗ୍ମୀତା ବାଲେଶ୍ୱରବାସୀଙ୍କୁ ଭଞ୍ଜ ସାହିତ୍ୟ ଆଲୋଚନା ଶୁଣିବା ପାଇଁ ଆକୃଷ୍ଟ କରିଥିଲା । ମିହିର କୁମାର ପାଣିଗ୍ରାହୀଙ୍କ ଚେଷ୍ଟାରେ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ବାଲେଶ୍ୱରବାସୀଙ୍କୁ ଯେଉଁ ରସ ବାଣ୍ଟି ଦେଲେ ସେଥିରେ ବଙ୍ଗୀୟ ଭାଇଭଉଣୀମାନେ ଏପରି ତନ୍ମୟ ହୋଇଥିଲେ ଯେ ସେମାନେ ପୁନଃ ପୁନଃ ଏଭଳି ଭାଷଣ ଶୁଣିବା ପାଇଁ ସ୍ମୃତି-କମିଟିର ସମ୍ପାଦକଙ୍କୁ ଅନୁରୋଧ କରୁଥିଲେ । ଶ୍ରୀ ନରଞ୍ଜନ ଚନ୍ଦ୍ର ବିଦ୍ୟାଧର ସେତେବେଳେ ବାଲେଶ୍ୱରର ସିଭିଲ୍ ସର୍ଜନ ଥିଲେ । ଏଥିପାଇଁ ସେ ଅକୁଣ୍ଠ ଚିତ୍ତରେ ଅର୍ଥ ସାହାଯ୍ୟ ଦେଉଥିଲେ ।



 

# ସ୍ମୃତି କମିଟିର ଏଭଳା ଲୋପ

ଜଗତରେ ଦୁଇ ପ୍ରକାର ଶକ୍ତି ଅଛି । ଗୋଟିଏ ଯୋଗ୍ୟ ବେଶରେ ହେଲେ ଅନ୍ୟଟି ଅଯୋଗ୍ୟରେ ପରିଗଣିତ ହୋଇଥାଏ । ଗୋଟିଏ ସତ୍ୟ ବୋଲି ଗଣ୍ୟ ହେଲେ ଅନ୍ୟଟି ଅସତ୍ୟ ବୋଲି ପ୍ରମାଣିତ ହୁଏ । 'ସ୍ମୃତିମନ୍ଥନ' ଲେଖା ପୂର୍ବରୁ ସାହିତ୍ୟ ପରିଷଦର ପ୍ରକାଶିତ ଦୁଇଟି ପୁସ୍ତକ ପ୍ରକାଶ ପାଇଛି । ଗୋଟିଏ ୧୯୫୫ ମସିହା ଫକୀରମୋହନ ପରିକ୍ରମା, ୧୯୭୭ରେ ରଜତ ଶ୍ରୀ । ଉପଧ୍ୟାୟ ବ୍ୟକ୍ତି, ଶିକ୍ଷାବିତ୍ ସାହିତ୍ୟ ରଥୀମାନଙ୍କର ଲେଖା ସହିତ କେତେକ ବାଲେଶ୍ୱରଂ ବାସୀମାନଙ୍କର ଲେଖା ସେଥିରେ ସନ୍ନିବିଷ୍ଟ ଅଛି । ବାଲେଶ୍ୱରବାସୀଙ୍କ ଲେଖା ସମ୍ପୂର୍ଣ୍ଣ ଭ୍ରାନ୍ତିଜନକ ବୋଲି ଲେଖିଦେଇ ଉଡ଼ାଇ ଦେବା ଏକ ଧୃଷ୍ଟତା ବ୍ୟତୀତ କିଛି ହେବନାହିଁ । ମାତ୍ର ପାଠକମାନେ ପ୍ରମାଣ ପୋଷକ କାଗଜପତ୍ର ନ ଦେଖି ସହଜେ ବିଶ୍ୱାସ କରି ପାରିବେ ନାହିଁ । ତାହା କରିବା ମଧ୍ୟ ଉଚିତ ନୁହେଁ । କାରଣ ଏ ଯୁଗରେ ପ୍ରତ୍ୟେକ ନିଜ ନିଜର ଗାରିମା ଗାନ କରି ନିଜେ, ଭାଗ୍ୟ-ବିଧାତା ସାଜିଥିଲାବେଳେ, କେତେକ ପାଠକ ସରଳ ଓ ସଚ୍ଚୋଟପଣରେ ଗୋଟିକୁ ଗ୍ରହଣ କରିନେବା ମଧ୍ୟ ନିପଟ ମୂର୍ଖାମି । ସରଳପଣିଆ କେବଳ ମୂର୍ଖଲୋକ ଠାରେ ଥାଏ ବୋଲି ଏ ଶ୍ରେଷ୍ଠ ଯୁଗର ରାଜନୈତିକ କ୍ଷମତା ପ୍ରାର୍ଥୀମାନେ ସେମାନଙ୍କୁ ଟେବୋର ଅର୍ଥ ଜାଲ ବିଛାଇବାରେ ଅଭ୍ୟସ୍ତ ହୋଇଗଲେଣି ।

ତେଣୁ ନିଜର ଜୟଭେରୀ ବଜାଇବାରେ ଚେଷ୍ଟିତ ଲୋକମାନଙ୍କୁ ଉନ୍ମୁଖ କରି ଏ ଯୁଗର କାଠିକର ପାଠ । ସବୁଥିରେ ଅର୍ଥ ଅନ୍ତରାୟ ସୃଷ୍ଟି କରିଥାଏ । ପୁସ୍ତକମାନଙ୍କରେ ଦେଖିବାକୁ ମିଳୁଛି ଯେ, ଯେତେ ବଡ଼ ସତ୍ୟ ହେଉ ପଛକେ, ତାହାକୁ ମିଥ୍ୟା ବୋଲି ବହୁକ୍ଷେତ୍ରରେ ଲେଖାହୋଇ ପ୍ରତିପାଦିତ କରାଯାଉଛି । ତାହାକୁ ଯୁକ୍ତିରେ କୁହାଯାଇଥାଏ ଯେ, ଯଦ୍ୟପି ସତ୍ୟକୁ କେହି ଅପଳାପ କରେ ତାହାର ପ୍ରତିବାଦ କୌଣସି ପୁସ୍ତକରେ ବାହାରିବାର ପ୍ରମାଣ ନ ଥିବାରୁ ଏହାର ସତ୍ୟତା ଅଟଳ ।

ଏହି ପରିପ୍ରେକ୍ଷୀରେ ସତ୍ୟ, ମିଥ୍ୟା ପ୍ରମାଣ ଆରେ ଓଜନ କରାଯାଉଛି ନିଜର ଗୌରବ ବାଜା ଶବ୍ଦ ମାଧ୍ୟମରେ ।

"ଶାନ୍ତକାନନରେ" କବିଙ୍କର ସ୍ୱହସ୍ତ ରୋପିତ ବୃକ୍ଷ ସହିତ ତାଙ୍କର ଶାନ୍ତକାନନ ଏ ୧-୮° ଡି ପରିମିତ ଜମି କର୍ତ୍ତନ କରାଯାଇ ଏ ୧-୪୭ ଡି:ରେ ରଖାଗଲା । ଯେଉଁ ସ୍ୱାର୍ଥ ଜାତି ପାଇଁ ବୃହତ୍ ବ୍ୟକ୍ତିଗତ ସ୍ୱାର୍ଥ ସମ୍ମୁଖରେ ଜାତୀୟତାର ସ୍ଥାନ ସେଠାରେ ଗୌଣ । ସ୍ୱାଧୀନୋତ୍ତର ଭାରତର ଯୋଗ୍ୟତାର ମାନଦଣ୍ଡ ନିମ୍ନଗାମୀ କେବଳ ନୁହେଁ, ତାହା ଦିନକୁ ଦିନ ନୈରାଶ୍ୟ-ଜନକ ବୋଲି ଅନୁଭବ ହେଉଛି । ସେ କ୍ଷେତ୍ରରେ ସ୍ୱାଧୀନତା ଆସିବାର କିଛି ବର୍ଷ ପରେ ଗୋଟିଏ କୁଟୀରକୁ କ୍ଷମତା ବଳରେ ନଷ୍ଟ କରି ବ୍ୟକ୍ତିଗତ ଲାଭ ପାଇଁ ଯଦି କେହି କିଛି କରିଛି, ଦେଶବାସୀ ତାକୁ ଦୋଷୀ କରିବା ମଧ୍ୟ ଠିକ୍ ନୁହେଁ । କାରଣ ଚିନ୍ତା ଦୈନ୍ୟ ଏ ଜାତି ପକ୍ଷରେ ଗୋଟିଏ ବିପଦ ହେଲାଣି ବୋଲି ବୁଝାଯିବ ।

ସ୍ୱାଭାବିକ ଭାବରେ ଜୀବନ ଯାତ୍ରାର ଗତି ମଧ୍ୟ ମତଦ୍ୱୈଧ ଗତି କରୁଛି । ଗୋଟିଏ ମତ ଅନ୍ୟସ୍ୱାର୍ଥକୁ ନିଜର ଅଭିମତ ବୋଲି କହି ଛନ୍ଦଯୁକ୍ତ ଭାଷା ଓ ନାଟକୀୟ ହୀନ ତର୍କ, ଶେଷରେ ବିଜ୍ଞାପନ ଜରିଆରେ ନିଜର ସ୍ୱାର୍ଥପର ଅଭିମତକୁ ଚପାଇବାରେ ପଶ୍ଚାତ୍‌ପଦ ହେବାକୁ କୁଣ୍ଠାବୋଧ କରୁ ନଥିବା ଦୃଷ୍ଟାନ୍ତମାନ ପ୍ରତ୍ୟହ ଖବରକାଗଜ ପୃଷ୍ଠା ଖୋଲି ଦେଖୁଛୁ । ତେଣୁ ଏ ଓଡ଼ିଆ ପୁଅମାନେ ଏହି ମାଟିରେ ଜନ୍ମ ନେଇ କେତେକ ଆଧ୍ୟାତ୍ମିକ ପ୍ରେରଣା ଦ୍ୱାରା ନିଜର କଳାକୃତି ଓ ବିଜ୍ଞାପନ ଦ୍ୱାରା ନିଜର ମତକୁ ଜାହିର କରିପାରନ୍ତି । ତାହା ମଧ୍ୟ ଉତ୍ତମ ବ୍ୟବସ୍ଥା ।

କିନ୍ତୁ ପ୍ରକୃତ ଘଟଣାକୁ ପରିଷ୍କାର ଭାବରେ ପାଠକମାନଙ୍କ ସମ୍ମୁଖରେ ନ ଥୋଇଲେ କିମ୍ବା ଜ୍ଞାତବ୍ୟ ବିଷୟକୁ ଦରକାରି କଳଣୀ ଦ୍ୱାରା ନିବିଡ଼ କୋଠରୀରେ ଘୋଡ଼ାଇ ରଖିଲେ ତାହା ସବୁକ୍ଷେତ୍ରରେ ଗୋଳମାଳ ସୃଷ୍ଟି କରିବ ଓ ପରେ ଲେଖକର ଗୁରୁତ୍ୱକୁ ଲଘୁ କରି ପକାଇବ । ତେଣୁ ନିଜର କଲମ ମୁନରେ ଯାହା ଲେଖିଦେଲେ ତାହା ସ୍ଥାୟୀ ହେବ ନାହିଁ ।

୧୯୫୩ ମସିହା ବେଳକୁ କେତେକ ଓଡ଼ିଆ ଯୁବକମାନେ ସେମାନଙ୍କର ଉତ୍କଳ ମାତାର ଅଙ୍ଗହାନି ଦେଖି, ମାତୃସେବାରେ ବ୍ରତୀହେଲେ । * ସେହି ସମୟରେ ବାଲେଶ୍ୱରର ବହୁ ଯୁବକ ସେଥିପାଇଁ କାରାବରଣ କରିଥିଲେ । ଶ୍ରୀ ଶ୍ୟାମ ସୁନ୍ଦର ମହାପାତ୍ର ଅଧୁନା ଏମ୍. ପି., ବୈକୁଣ୍ଠ ଦାସ ଅଧୁନା ବରିଷ୍ଠ ସାମ୍ବାଦିକ ଓ ଆଇନଜୀବୀ । ଫକୀରମୋହନ ସ୍ମୃତି କମିଟିର କର୍ମକର୍ତ୍ତାଗଣ ମଧ୍ୟ ସେ ଦିଗରେ ଅଗ୍ରେସର ହୋଇ ଉଠିଥିଲେ । ମେଦିନୀପୁର ସରାଇକେଲା ଇତ୍ୟାଦିରେ ଏ ଜାତିର ଗୌରବମୟ ଅତୀତ ଓ ଭବିଷ୍ୟତ ଗାଥାମାନ ପ୍ରଚାର କରିବାକୁ ସେମାନେ ଚେଷ୍ଟିତ ଥିଲେ ।

୧୯୫୩ ମସିହା ପରେ ୧୯୫୫ ମସିହା ବେଳକୁ ସ୍ମୃତି କମିଟି ନିଜକୁ ଏକ କ୍ଷୁଦ୍ର ଗଣ୍ଡିର ମଧ୍ୟରେ ନରଖି ପୂର୍ଣ୍ଣାଙ୍ଗ ଓଡ଼ିଶା କାର୍ଯ୍ୟ କରିବା ନିମନ୍ତେ ବହୁ ଚିନ୍ତା କରି ଛାତ୍ର ଓ ଅଧ୍ୟାପକମାନଙ୍କ ହାତରେ ସାହିତ୍ୟ ପରିଷଦ ମଧ୍ୟରେ ନିମଗ୍ନ କରି ଦେଇଥିଲେ ନିଜର ସତ୍ତାକୁ । ୧୯୫୬ ମସିହାରେ ସୀମା ଆନ୍ଦୋଳନରେ ସ୍ୱତଃସ୍ଫୂର୍ତ୍ତ ଭାବରେ ଯେଉଁ ଜନ ଜାଗରଣ ଓଡ଼ିଶାରେ ଦେଖାଦେଇଥିଲା, ତାହା ବାଲେଶ୍ୱରରେ ଚଞ୍ଚଳତା ସୃଷ୍ଟି କରିଥିଲା । ବହୁ ଛାତ୍ର, ଯୁବକ, ବୁଦ୍ଧିଜୀବୀ ଜେଲ ବରଣ କରିଥିଲେ । ସେଥିରେ ଅଗ୍ରଣୀ ଥିଲେ ୰ ମୁକୁନ୍ଦ ପ୍ରସାଦ ଦାସ । ସମ୍ପାଦକ କରି ରଖିଥିଲେ ନିଜର ଏକ ଲୋକ, ଯେ କି ୧୯୫୩ ମସିହାରେ ସାହିତ୍ୟ ପରିଷଦର ସମ୍ପାଦକ ଥିଲେ ।

ପରେ ପରେ ‘ଘଟଣାମାନ ଆଜି ଅତୀତର ଦିଗ୍‌ବଳୟ ପର ପାରରେ ଲୀନ ହୋଇଯାଇଛି ।

୧୯୫୯ ମସିହାରେ ଫକୀରମୋହନ ପତ୍ରିକା ପାଇଁ ଅର୍ଥ ଯୋଗାଣ ଓ କାଗଜପତ୍ରାଦି ଯୋଗାଇ ଦେବାରେ ପୂର୍ବତନ ସ୍ମୃତି କମିଟିର ସମ୍ପାଦକ ଓ ପରେ ଫକୀରମୋହନ ସାହିତ୍ୟ ପରିଷଦର ସମ୍ପାଦକ ଓ ପ୍ରଚାର ବିଭାଗରେ ବାଲେଶ୍ୱରରେ ରାଜକାର୍ଯ୍ୟରେ ଥିବା ଶ୍ରୀ ଆର୍ତ୍ତ ରାଉତ ଧ୍ୟାନ ଦେଇଥିଲେ । ଉଦ୍ଦେଶ୍ୟ ଏ ପୁସ୍ତକଟିରୁ ତଦାନୀନ୍ତନ କୁଳପତି

* ଶ୍ରୀ କୁଞ୍ଜବିହାରୀ ଦାସଙ୍କର ‘ଛିନ୍ନମସ୍ତା ଉତ୍କଳ’ ପୁସ୍ତକ ଦ୍ରଷ୍ଟବ୍ୟ ।

୰ ଚିନ୍ତାମଣି ଆଚାର୍ଯ୍ୟ ପାଠ୍ୟ ପୁସ୍ତକରେ ଗ୍ରହଣ କରାଇ ନେବାର ପ୍ରତିଶ୍ରୁତି ଦେଇଥିବାରୁ ଏହାର ମୁଦ୍ରଣ ପରେ ବହୁଳ ଭାବରେ ବିକ୍ରୟ ହୋଇ ତାହାର ଲବ୍ଧ ଧନ ସାହିତ୍ୟ ପରିଷଦର ପାଣ୍ଠିକୁ ଆସିବ ।

କିନ୍ତୁ ସରକାରୀ ଭାବରେ ସେ ପୁସ୍ତକ ଗ୍ରହଣ ହୋଇ ବହୁଳ ପରିମାଣରେ ବିକ୍ରୀ ହେଲା । ୧୯୫୫ ମସିହାରେ ସମ୍ପାଦକ ତାହା ସମସ୍ତ ମୁଦ୍ରଣ କରି ବିକ୍ରୟ କଲେ । ମାତ୍ର ଗୋଟିଏ ବୋଲି କଉଡ଼ି ସାହିତ୍ୟ ପରିଷଦକୁ ଆସିଲା ନାହିଁ । ତେଣୁ କେତେକ ବର୍ଷ ପରେ ୰ ହରିବନ୍ଧୁ ଶତପଥୀ ସମ୍ପାଦକ ଥିଲାବେଳେ, ଏ ବିଷୟ ଆଲୋଚନା ହୋଇ ମୁଦ୍ରଣ କରି ବିକ୍ରୟ କରିଥିବା ତଦାନୀନ୍ତନ ସମ୍ପାଦକଙ୍କୁ ଏକ ଆଇନଗତ ଭାବେ ତାହାର ହିସାବ ମଗା ଯାଇଥିଲା । କାରଣ ବିପୁଳ ଅର୍ଥ ଯେହି ପରିକ୍ରମା ବିକ୍ରୟରେ ମିଳିଥିବାର ସମସ୍ତେ ସେତେବେଳେ ଜାଣିଥିଲେ । ଆଉ କିଛି କରା ନଯିବାରୁ ସେ ଅର୍ଥ ମିଳିଲା ନାହିଁ । ଏହା ଉପରେ ଗୁରୁତ୍ୱ ନଦେବା ହାରା ଏକ ନିଷ୍ଫଳତା ମଧ୍ୟରେ ଏହାର ସ୍ପୃହା ମଧ୍ୟ ଲୁଚିଗଲା । ୰ ହରିବନ୍ଧୁ ବାବୁ ଏହାକୁ ରେଜେଷ୍ଟ୍ରି କରାଇ ଫକୀରମୋହନ ସାହିତ୍ୟ ପରିଷଦକୁ ସରକାରୀ ଅନୁମୋଦନ ପାଇବାର ହକ୍‌ଦାର କରାଇଥିଲେ ।

ସ୍ମୃତି ତରଙ୍ଗକୁ ଶେଷ କଲାବେଳେ ବହୁ ଆଶା ନିରାଶାର ପଥ ଆମେ ଅତିକ୍ରମ କରି ସାରିଲେଣି । ଆଗାମୀ ସମୟ କେବଳ ଭଲ ମନ୍ଦର ବିଚାର କରିବ ।

